ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ) - ୧

ବନମାଳି ଦାସଙ୍କ

କୃତ

# ଅର୍ଥଗୋବିନ୍ଦ

ସମ୍ପାଦକ :

ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ

ପ୍ରକାଶକ :

ସଂସ୍କୃତି ନିର୍ଦ୍ଦେଶାଳୟ

ଓଡ଼ିଶା, ଭୁବନେଶ୍ୱର - ୭୫୧ ୦୧୪

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ) - ୧

*ଗ୍ରନ୍ଥର ନାମ :*
ଅର୍ଥଗୋବିନ୍ଦ
(ଗୀତଗୋବିନ୍ଦର ନବାକ୍ଷରୀ ପଦ୍ୟାନୁବାଦ)

*ଗ୍ରନ୍ଥକାର :*
ବଜରି ଦାସ

*ସମ୍ପାଦକ :*
ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ

*ପ୍ରକାଶକ :*
ସଂସ୍କୃତି ନିର୍ଦ୍ଦେଶାଳୟ
ଭୁବନେଶ୍ୱର - ୭୫୧ ୦୧୪

*ସଂସ୍କରଣ :*
ପ୍ରଥମ ସଂସ୍କରଣ, ୧୯୭୦
ଦ୍ୱିତୀୟ ସଂସ୍କରଣ, ୧୯୯୯

*ମୁଦ୍ରଣ :*
ଲତା କମ୍ପ୍ୟୁଟର ଏଣ୍ଡ କମ୍ୟୁନିକେସନ୍
ଡି.ଏଲ୍.ଏ - ୪୩, ଭି.ଏସ୍.ଏସ୍ ନଗର,
ଭୁବନେଶ୍ୱର - ୭୫୧ ୦୦୪

Orissan Oriental Text Series (Oriya) -1

*Name of the Book :*
ARTHA GOVINDA
(A Translation of the GitaGovinda in a nine-lettered metre)

*Name of the Author :*
Bajari Dasa

*Editor :*
Shri Dukhisyama Pattanayak

*Publisher :*
Directorate of Culture, Orissa
Bhubaneswar - 751 014

*Edition :*
First Edition, 1970
Second Edition, 1999

*Printed at :*
Lata Computer & Communication
D.L.A - 43, V.S.S Nagar,
Bhubaneswar - 751 004

*Price : Rs.* 8-50

ଶ୍ରୀ ଅଜିତ କୁମାର ତ୍ରିପାଠୀ
କମିଶନର୍ ଓ ଶାସନ ସଚିବ
ପର୍ଯ୍ୟଟନ, ସଂସ୍କୃତି ଓ କ୍ରୀଡ଼ାବିଭାଗ, ଓଡ଼ିଶା



ଓଡ଼ିଶା ସରକାର
ଭୁବନେଶ୍ୱର - ୭୫୧ ୦୦୧

# ଅଗ୍ରଲେଖ

ବିଶ୍ୱବିଶ୍ରୁତ ମଧୁର କୋମଳ କାନ୍ତ ପଦାବଳୀ ସମନ୍ୱିତ ଶ୍ରୀଗୀତଗୋବିନ୍ଦର ଯଶସ୍ୱୀ ରଚୟିତା ଭକ୍ତକବି ଜୟଦେବ ଥିଲେ ଉତ୍କଳୀୟ । ସେ ଆଜିର ଓଡ଼ିଶାର ବୈଷ୍ଣବୀୟ ଓ ମାଧବ ଉପାସନାର ଅଜସ୍ର ସ୍ମୃତି ନେଇ ପ୍ରବାହିତ ପ୍ରାଚୀନଦୀ କୂଳରେ 'କେନ୍ଦୁଲୀ' ଗ୍ରାମରେ ଜନ୍ମଗ୍ରହଣ କରି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ 'ଜୟଜଗଦୀଶହରେ' ବୋଲି ରାଧାମାଧବଙ୍କର ଜୟଗାନ କରିଯାଇଥିଲେ । ତାଙ୍କ ସ୍ତ୍ରୀ ନର୍ତ୍ତନ କୁଶଳା ପଦ୍ମାବତୀ ଶ୍ରୀଜଗନ୍ନାଥଙ୍କ ସେବାରେ ଉତ୍ସର୍ଗୀକୃତ 'ଦେବଦାସୀ' ଥିଲେ । ଜୟଦେବ ଗୋସ୍ୱାମୀଙ୍କ ପାବନ ସ୍ମୃତିରେ କେନ୍ଦୁଲୀଠାରେ ଓଡ଼ିଶା ସରକାର 'ଶ୍ରୀଜୟଦେବ ଗବେଷଣା ପ୍ରତିଷ୍ଠାନ' ସ୍ଥାପନ କରିଛନ୍ତି ।

ସମଗ୍ର ଭାରତବର୍ଷରେ ଗୀତଗୋବିନ୍ଦର ମାଧୁର୍ଯ୍ୟଲୋଭୀ ଅନେକେ ଗୀତଗୋବିନ୍ଦ ସହ ଜୟଦେବଙ୍କୁ ମଧ ନିଜର କରିବା ପାଇଁ କମ୍ ଚେଷ୍ଟା କରିନାହାନ୍ତି । କିନ୍ତୁ ଗୀତଗୋବିନ୍ଦର ଟୀକା, ଅନୁବାଦ ଓ ଅନୁକୃତିରେ ଓଡ଼ିଶାର ଅବଦାନ ହିଁ ଏ ମାଟିର କବିଙ୍କ ପ୍ରତି ଅମାପ ଶ୍ରଦ୍ଧାର ସମୁଜ୍ଜ୍ୱଳ ନିଦର୍ଶନ ହୋଇରହିଛି । ବନମାଳି ଦାସଙ୍କ ଅର୍ଥଗୋବିନ୍ଦ ସେହି ଶ୍ରଦ୍ଧାର ଏକ ମହାର୍ଘ ସୁମନ । ଏଥିରେ ଓଡ଼ିଶାର ଲୋକପ୍ରିୟ ନବାକ୍ଷରୀ 'ଭାଗବତ ବାଣୀ'ରେ ଗୀତଗୋବିନ୍ଦର ସରଳ ସୁବୋଧ ଅନୁବାଦ ସହ ଗୀତଗୋବିନ୍ଦ ପାଠରେ ବିଭିନ୍ନ ସମୟରେ ଅନୁପ୍ରବେଶ କରିଥିବା ଅପପାଠର ନିରାକରଣ ସକାଶେ ସଫଳ ପ୍ରଯତ୍ନ କରି ସେସବୁ ପ୍ରକ୍ଷିପ୍ତ ଅଂଶକୁ ବାଦ୍ ଦେଇ ଜୟଦେବଙ୍କ କୃତ ମୂଳ 'ବାସ୍ତରି ଶ୍ଳୋକ ଚଉବିଂଶ ଗାଥା'ର ହିଁ କେବଳ ବନମାଳି ଦାସ ଅନୁବାଦ କରିଛନ୍ତି । ଏଣୁ ଗୀତଗୋବିନ୍ଦର ମୌଳିକତା ରକ୍ଷା କରିବାରେ ଯତ୍ନଶୀଳ ବନମାଳି ଦାସଙ୍କ 'ଅର୍ଥଗୋବିନ୍ଦ' ଏକ ପ୍ରାମାଣିକ ଆଲୋକସ୍ତମ୍ଭ ଭଳି ସହାୟକ ହେବ ।

'ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା'ର ପ୍ରଥମ ସୁମନ ଭାବରେ ୧୯୭୦ରେ ନିବେଦିତ ଏହି ଗ୍ରନ୍ଥଟି ଓଡ଼ିଶାର ବିଶିଷ୍ଟ ବିଦ୍ୱାନ୍ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ସହ ସମ୍ପାଦିତ ଓ ପରିମାର୍ଜିତ ହୋଇ ନିର୍ଭୁଲ ଭାବରେ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ପକ୍ଷରୁ ପୁନଃ ପ୍ରକାଶିତ ହେଲା । ଆଶାକରେ ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ ବିଷୟରେ ଆଗ୍ରହୀ ଜିଜ୍ଞାସୁ ପାଠକଙ୍କୁ ଏହା ଅନେକ ଉପାଦାନ ଯୋଗାଇବାରେ ନିଶ୍ଚୟ ସମର୍ଥ ହେବ ।

ଶ୍ରୀ ଅଜିତ କୁମାର ତ୍ରିପାଠୀ
କମିଶନର୍ ଓ ଶାସନ ସଚିବ
ପର୍ଯ୍ୟଟନ, ସଂସ୍କୃତି ଓ କ୍ରୀଡ଼ାବିଭାଗ, ଓଡ଼ିଶା

ଭୁବନେଶ୍ୱର - ୭୫୧ ୦୦୧
ତା - ୧୬ ଫେବ୍ରୁଆରୀ, ୧୯୯୯



# ଅଭିମତ

**ଶ୍ରୀ ଅସିତ୍ ତ୍ରିପାଠୀ** ଆଇ. ଏ. ଏସ୍
ନିର୍ଦ୍ଦେଶକ, ସଂସ୍କୃତି
ଓଡ଼ିଶା ସରକାର, ଭୁବନେଶ୍ୱର

ସଂସ୍କୃତ ଭାଷାରେ ରଚିତ କବି ଜୟଦେବଙ୍କ 'ଗୀତଗୋବିନ୍ଦ' ସରଳ କାନ୍ତ-କୋମଳ ଗଦ୍ୟାବଳୀର ଏକ ମଧୁର ଗୀତିକାବ୍ୟ । ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଏହି ଗୀତଗୋବିନ୍ଦ ପ୍ରତିଦିନ ଗାନ ହେବା ପରେ ଏହା ବିଭିନ୍ନ ଭାଷାରେ ଅନୁଦିତ ହୋଇ ସମଗ୍ର ବିଶ୍ୱରେ ଲୋକପ୍ରିୟତା ଅର୍ଜ୍ଜନ କରିଛି ।

ଓଡ଼ିଶାର କବି ବଜରି ଦାସ ଖୋର୍ଦ୍ଧା ରାଜା ଗଜପତି ମୁକୁନ୍ଦଦେବ (ପ୍ରଥମ)ଙ୍କ ୨୧ ଅଙ୍କରେ 'ଶ୍ରୀ ଗୀତଗୋବିନ୍ଦ'କୁ ନବାକ୍ଷରୀ ଭାଗବତ ବୃତ୍ତରେ ଅନୁବାଦ କରି ଏହାର ନାମ ଦେଇଥିଲେ 'ଅର୍ଥଗୋବିନ୍ଦ' । ଏହା ୨୭ ଟି ଅଧ୍ୟାୟ ବିଶିଷ୍ଟ ଏବଂ ଏଥିରେ ଶ୍ରୀ ଗୀତଗୋବିନ୍ଦର ଚବିଶଟି ଗାଥା ଓ ବାସ୍ତରୀଟି ଶ୍ଳୋକର ଅନୁବାଦ ପରିଦୃଷ୍ଟ ହୁଏ ।

ସଂସ୍କୃତି ନିର୍ଦ୍ଦେଶାଳୟ ଦ୍ୱାରା ଏହା ପୁନଃ ମୁଦ୍ରିତ ହୋଇଥିବାରୁ ଜନ ମାନସରେ ଆଦୃତ ହେବ ବୋଲି ମୋର ଦୃଢ଼ ଆଶା ।

ଭୁବନେଶ୍ୱର
୫-୩-୯୯

ଅସିତ୍ ତ୍ରିପାଠୀ

# ସୂଚୀପତ୍ର


| ବିଷୟ | | ପୃଷ୍ଠା |
|---|---|---|
| ମୁଖବନ୍ଧ | | ୧-୩୭ |

## ଅର୍ଥଗୋବିନ୍ଦ

| | | |
|---|---|---|
| **ପ୍ରଥମ ସର୍ଗ** | | |
| ପ୍ରଥମ ଅଧ୍ୟାୟ | | ୧-୭ |
| ଦ୍ୱିତୀୟ ଅଧ୍ୟାୟ | | ୮-୧୨ |
| ତୃତୀୟ ଅଧ୍ୟାୟ | (୧ମ ଗୀତ ସମେତ) | ୧୩-୧୯ |
| ଚତୁର୍ଥ ଅଧ୍ୟାୟ | (୨ୟ ଗୀତ ସମେତ) | ୨୦-୨୫ |
| ପଞ୍ଚମ ଅଧ୍ୟାୟ | (୩ୟ ଗୀତ ସମେତ) | ୨୬-୩୨ |
| ଷଷ୍ଠ ଅଧ୍ୟାୟ | (୪ର୍ଥ ଗୀତ ସମେତ) | ୩୩-୩୮ |
| **ଦ୍ୱିତୀୟ ସର୍ଗ** | | |
| ସପ୍ତମ ଅଧ୍ୟାୟ | (୫ମ ଗୀତ ସମେତ) | ୩୯-୪୪ |
| ଅଷ୍ଟମ ଅଧ୍ୟାୟ | (୬ଷ୍ଠ ଗୀତ ସମେତ) | ୪୫-୫୦ |
| **ତୃତୀୟ ସର୍ଗ** | | |
| ନବମ ଅଧ୍ୟାୟ | (୭ମ ଗୀତ ସମେତ) | ୫୧-୫୮ |
| **ଚତୁର୍ଥ ସର୍ଗ** | | |
| ଦଶମ ଅଧ୍ୟାୟ | (୮ମ ଗୀତ ସମେତ) | ୫୯-୬୪ |
| ଏକାଦଶ ଅଧ୍ୟାୟ | (୯ମ ଗୀତ ସମେତ) | ୬୫-୬୯ |
| **ପଞ୍ଚମ ସର୍ଗ** | | |
| ଦ୍ୱାଦଶ ଅଧ୍ୟାୟ | (୧୦ମ ଗୀତ ସମେତ) | ୭୦-୭୩ |
| ତ୍ରୟୋଦଶ ଅଧ୍ୟାୟ | (୧୧ଶ ଗୀତ ସମେତ) | ୭୪-୮୧ |

ଷଷ୍ଠ ସର୍ଗ
ଚତୁର୍ଦ୍ଦଶ ଅଧ୍ୟାୟ (୧୨ଶ ଗୀତ ସମେତ) ୮୨-୮୭
ସପ୍ତମ ସର୍ଗ
ପଞ୍ଚଦଶ ଅଧ୍ୟାୟ (୧୩ଶ ଗୀତ ସମେତ) ୮୮-୯୩
ଷୋଡ଼ଶ ଅଧ୍ୟାୟ (୧୪ଶ ଗୀତ ସମେତ) ୯୪-୯୭
ସପ୍ତଦଶ ଅଧ୍ୟାୟ (୧୫ଶ ଗୀତ ସମେତ) ୯୮-୧୦୨
ଅଷ୍ଟାଦଶ ଅଧ୍ୟାୟ (୧୬ଶ ଗୀତ ସମେତ) ୧୦୩-୧୦୭
ଅଷ୍ଟମ ସର୍ଗ -
ଊନବିଂଶ ଅଧ୍ୟାୟ (୧୭ଶ ଗୀତ ସମେତ) ୧୦୮-୧୧୨
ନବମ ସର୍ଗ -
ବିଂଶତି ଅଧ୍ୟାୟ (୧୮ଶ ଗୀତ ସମେତ) ୧୧୩-୧୧୬
ଦଶମ ସର୍ଗ -
ଏକବିଂଶ ଅଧ୍ୟାୟ (୧୯ଶ ଗୀତ ସମେତ) ୧୧୭-୧୨୪
ଏକାଦଶ ସର୍ଗ -
ଦ୍ୱାବିଂଶ ଅଧ୍ୟାୟ (୨୦ଶ ଗୀତ ସମେତ) ୧୨୫-୧୩୧
ତ୍ରୟୋବିଂଶ ଅଧ୍ୟାୟ (୨୧ଶ ଗୀତ ସମେତ) ୧୩୨-୧୩୭
ଚତୁର୍ବିଂଶ ଅଧ୍ୟାୟ (୨୨ଶ ଗୀତ ସମେତ) ୧୩୮-୧୪୩
ଦ୍ୱାଦଶ ସର୍ଗ -
ପଞ୍ଚବିଂଶ ଅଧ୍ୟାୟ (୨୩ଶ ଗୀତ ସମେତ) ୧୪୪-୧୫୧
ଷଡ଼ବିଂଶ ଅଧ୍ୟାୟ (୨୪ଶ ଗୀତ ସମେତ) ୧୫୨-୧୫୮
ସପ୍ତବିଂଶ ଅଧ୍ୟାୟ ୧୫୯-୧୬୩
ପରିଶିଷ୍ଟ (Appendix) ୧୬୪-୧୮୫
ଶ୍ଳୋକାନୁକ୍ରମଣିକା ୧୮୬-୧୮୭
ଗୀତାନୁକ୍ରମଣିକା ୧୮୮-୧୯୧



# ମୁଖବନ୍ଧ

## ପୋଥି ବିବରଣ :

କବି ବଳରିଦାସଙ୍କ ଅର୍ଥଗୋବିନ୍ଦ ସମ୍ପାଦନାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଦୁଇଗୋଟି ପୋଥି ବ୍ୟବହୃତ ହୋଇଛି । ସେ ଦୁଇଟିର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

'କ' ପୋଥି (Museum No. OL./773)

ପ୍ରାପ୍ତିସ୍ଥାନ - ଗାରେଡ଼ି ପାଞ୍ଚଣ, P.S. - ବାଲିପାଟଣା, ଜିଲ୍ଲା-ପୁରୀ ।

ପ୍ରତି ପତ୍ରର ଦୈର୍ଘ୍ୟ x ପ୍ରସ୍ଥ ହେଉଛି ୧୭.୫ x ୩.୫ ସେ.ମି. । ଏହି ତାଳପତ୍ର ପୋଥିଟିର ପ୍ରତି ପାଖରେ ୫ ଧାଡ଼ି ଏବଂ କ୍ୱଚିତ୍ କ୍ୱଚିତ୍ ୬ ଧାଡ଼ି ରହିଛି । ଏଥିରେ ମୂଳ ଗୀତଗୋବିନ୍ଦର ସଂସ୍କୃତ ଗୀତ ଓ ଶ୍ଳୋକ ନାହିଁ । ଏହାର ଆରମ୍ଭରୁ ମୋଟ ୫୯ଟି ପତ୍ର (ବା folia) ମଧ୍ୟରେ ଅର୍ଥଗୋବିନ୍ଦର ୧୫ଶ ଅଧ୍ୟାୟ ପର୍ଯ୍ୟନ୍ତ ଅଛି । ୫୯ ସଂଖ୍ୟକ ପୃଷ୍ଠାର ପ୍ରଥମ ପାର୍ଶ୍ୱରେ ମାତ୍ର ଗୋଟିଏ ଧାଡ଼ି ରହିଛି ଏବଂ ସେହିଠାରେ ୧୫ଶ ଅଧ୍ୟାୟ ଶେଷ ହୋଇଛି । ପ୍ରଥମ ପାର୍ଶ୍ୱର ଆଉ ବାକି ସ୍ଥାନ ଏବଂ ସେହି ପତ୍ରର ଅପର ପାର୍ଶ୍ୱର ତଥା ୬୦ ସଂଖ୍ୟକ ପତ୍ରର ସ୍ଥାନ ଶୂନ୍ୟ ରହିଛି । ଏଥିରୁ ଜଣାଯାଉଛି ଅର୍ଥଗୋବିନ୍ଦ ଏହି ପୋଥିରେ ଅସମ୍ପୂର୍ଣ୍ଣ ରହିଛି । ୬୧ ସଂଖ୍ୟକ ପତ୍ରରୁ 'ଗୁପ୍ତଗୀତା' ଆରମ୍ଭ ହୋଇଯାଇଛି ।

'ଖ' ପୋଥି (Museum No. ORMS./99) ପ୍ରାପ୍ତିସ୍ଥାନ - ପୁରୀ ।

ଏହା ଏକ କାଗଜ ପ୍ରତି । ଏଥିରେ ଗୀତଗୋବିନ୍ଦର ପ୍ରତି ଗୀତ ଓ ଶ୍ଳୋକ ପରେ ଅର୍ଥଗୋବିନ୍ଦର ଅନୂଦିତ ଅଂଶ ସ୍ଥାନ ପାଇଛି । ୨୬୧ ପୃଷ୍ଠା ମଧ୍ୟରେ ମୂଳ ଗୀତଗୋବିନ୍ଦ ସହ ସମ୍ପୂର୍ଣ୍ଣ ଅର୍ଥଗୋବିନ୍ଦ ରହିଛି ।

## କବି ବଜରିଙ୍କ ସ୍ଥାନ ଓ କାଳ :

କବି ବଜରି ଦାସଙ୍କ ଅର୍ଥଗୋବିନ୍ଦ ବ୍ୟତୀତ ଅନ୍ୟ କୌଣସି କୃତି ଏ ପର୍ଯ୍ୟନ୍ତ ଉପଲବ୍ଧ ହୋଇନାହିଁ । ତାଙ୍କ କୃତିର ତାଦୃଶ ପ୍ରଚଳନ ଅଭାବରୁ କବି ବଜରି ମଧ ଓଡ଼ିଆ ସାହିତ୍ୟର ଇତିହାସରେ ସେପରି ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରି ପାରିନାହାନ୍ତି । କବିଙ୍କର ପରିଚୟ ସମ୍ବନ୍ଧରେ ମଧ ବିଶେଷ କିଛି ଜଣାଯାଇନାହିଁ । ଅର୍ଥଗୋବିନ୍ଦର ନିମ୍ନ କେତେକ ପଂକ୍ତିରୁ ହିଁ କବିଙ୍କର ଜନ୍ମସ୍ଥାନ ଓ କାଳ ସମ୍ବନ୍ଧରେ ଜଣାପଡ଼େ । କବି ଗ୍ରନ୍ଥ ଶେଷରେ ଲେଖିଛନ୍ତି -

"ବଜରି ଦାସ ମୂଢ଼ବାଇ
ଅଶୋକଖୋଲା ଗଡ଼େ ଥାଇଁ ।
ମୁକୁନ୍ଦଦେବ ରାଜାଙ୍କର
ଏକୋଇଶ ଅଙ୍କରେ ଆର ।
କୁମ୍ଭ ପନ୍ଦର ଦିନ ଅନ୍ତେ
ବଡ଼ିଲା ଲେଖନ ଏ ପୁସ୍ତେ ।
ଗାଇବା ଭାଗବତ ଦିଶ
ବୋଲେ ବଜରି ମୂଢ଼ ଦାସ ।"

ଏଥିରୁ ତେଲେଙ୍ଗା ମୁକୁନ୍ଦଦେବ ୨୧ ଅଙ୍କ ଯାଏ ରାଜତ୍ୱ କରି ନ ଥିବାରୁ କବିଙ୍କର ଗ୍ରନ୍ଥରଚନା ସମୟ ଭୋଇବଂଶୀୟ ପ୍ରଥମ ମୁକୁନ୍ଦଦେବଙ୍କ ୨୧ ଅଙ୍କ ବା ଖ୍ରୀ: ୧୬୭୨-୭୩ ବୋଲି ଗ୍ରହଣ କରାଯାଇପାରେ । କିନ୍ତୁ ଗ୍ରନ୍ଥଲିଖନ 'ଅଶୋକଖୋଲ' ଗଡ଼ରେ ହୋଇଥିବା କବି ଲେଖିଛନ୍ତି । "ଅଶୋକଖୋଲ ଗଡ଼ ଢେଙ୍କାନାଳ ଜିଲ୍ଲାରେ ଅବସ୍ଥିତ ଥିବାର ଜଣାଯାଏ" ବୋଲି ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଲେଖିଛନ୍ତି* । କିନ୍ତୁ ଢେଙ୍କାନାଳରେ 'ଅଶୋକଖୋଲ' ନାମରେ କୌଣସି ସ୍ଥାନ ଥିବା ପୁରୁଣା ସରକାରୀ ନଥିପତ୍ରରୁ ମଧ ଜଣାଯାଏ ନାହିଁ । ବରଂ ଖଲ୍ଲିକୋଟ ନିକଟବର୍ତ୍ତୀ ପ୍ରସିଦ୍ଧ 'ନାରାୟଣୀ ପୀଠ' ଯାହାର କି ରମଣୀୟତା ଅଶୋକ ବୃକ୍ଷର ପରିବେଷ୍ଟନୀ ମଧରେ ବହୁଗୁଣିତ ତାହାର ଅନ୍ୟ ସୁପ୍ରଚଳିତ ନାମ 'ଅଶୋକଖୋଲ'** । ସେଠାରେ ପ୍ରବାହିତ

---

* 'ଖୁର୍ଦ୍ଧା ଇତିହାସ', ପୃଷ୍ଠା - ୧୧୨

** ଦ୍ରଷ୍ଟବ୍ୟ - ଖଲ୍ଲିକୋଟର ସ୍ୱର୍ଗତ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେବଙ୍କ ବ୍ରତୋପନୟନ ସମୟରେ ପ୍ରକାଶିତ 'ଚିତ୍ରମଞ୍ଜୁଷା' ଗ୍ରନ୍ଥ ।

ହେଉଥିବା ନିର୍ଝରଟିର ନାମ ମଧ୍ୟ 'ଅଶୋକଝର' । ଭାଷାଦୃଷ୍ଟିରୁ ବିଚାର କଲେ କବିଙ୍କ ରଚନାରେ ଥିବା କେତେକ ଗଞ୍ଜାମୀ ଶବ୍ଦ ମଧ୍ୟ ଏହି ପ୍ରମାଣକୁ ସମର୍ଥନ କରେ । ଉଦାହରଣସ୍ୱରୂପ ଗୀତଗୋବିନ୍ଦର ତୃତୀୟ ସର୍ଗସ୍ଥ 'ଭ୍ରୂଚାପେ ନିହିତଃ ...' ଇତ୍ୟାଦି ଶ୍ଳୋକର 'ବିମ୍ବାଧରୋ ରାଗବାନ୍' ଅଂଶକୁ ଅନୁବାଦ କରି ଧରଣୀଧର ଲେଖିଛନ୍ତି-

"ସୁରଙ୍ଗ ଅଧର ତୋର ପକ୍ୱ ବିମ୍ବ ଫଳାକାର
ସ୍ୱଭାବେ ରଙ୍ଗ ତାହାର ବହିଣ ଅଛି" ଇତ୍ୟାଦି ।

କିନ୍ତୁ ବଜରି ଦାସ ଲେଖିଛନ୍ତି -

ପାଚିଲା ଟରଡ଼ା ପରାଏ
ଓଷ୍ଠ ତୋ ରାଗବର୍ଣ୍ଣ ଶୋହେ ।

(ଅ:ଗୋ: ୯୮୭୯)

ବିମ୍ବ ଫଳ ବା କୁନ୍ଦୁରୀ ଅର୍ଥରେ ଟରଡ଼ା ଶବ୍ଦର ପ୍ରୟୋଗ ଗଞ୍ଜାମ ବ୍ୟତୀତ ଅନ୍ୟ ଅଞ୍ଚଳରେ ହେଉଥିବା ଶ୍ରୁତିଗୋଚର ହୋଇନାହିଁ । ବରଂ ଟରଡ଼ା ଶବ୍ଦ କଟକ, ଢେଙ୍କାନାଳ ଅଞ୍ଚଳରେ ଅନ୍ୟ ଅର୍ଥରେ ବ୍ୟବହୃତ ହୁଏ । ସେହିପରି 'କାଗୁ, ବୋଲ, ଯିସ, କିସ, ଶାପ୍ୟ, ଅନାବତା (ସବୁଆଡ଼େ ଅର୍ଥରେ), ସଞ୍ଚା (ଶୋଭା ଓ ପୁଷ୍ପ ଅର୍ଥରେ)* ପ୍ରଭୃତି କେତେକ ଶବ୍ଦର ପ୍ରୟୋଗ ମଧ୍ୟ ଏହି ଦୃଷ୍ଟିରୁ ବିଚାର ଯୋଗ୍ୟ । କବିଙ୍କର ଜନ୍ମସ୍ଥାନ ଅଶୋକ ଖୋଲ (ନାରାୟଣୀ ଖୋଲ) ବା ତନ୍ନିକଟବର୍ତ୍ତୀ କୌଣସି ସ୍ଥାନ ବୋଲି ନିର୍ଦ୍ଦିଷ୍ଟ ଭାବରେ କୁହା ନ ଗଲେ ମଧ୍ୟ ତାଙ୍କ ଜନ୍ମସ୍ଥାନ ଗଞ୍ଜାମ ବା ଗଞ୍ଜାମ-ପୁରୀ ମଧ୍ୟବର୍ତ୍ତୀ କୌଣସି ଅଞ୍ଚଳ ବୋଲି ଅନୁମାନ କରାଯାଇପାରେ । 'ବଜରି' (< ବଜ୍ରୀ) ନାମରୁ କବିଙ୍କୁ କେହି କେହି ପଣ୍ଡିମା ବୋଲି ମନେ କରନ୍ତି । କିନ୍ତୁ ସେପରି ମନେ କରିବାର କୌଣସି କାରଣ ନାହିଁ । କାରଣ ଗଞ୍ଜାମ ଅଞ୍ଚଳରେ ତଥା ଓଡ଼ିଶାର ଅନ୍ୟତ୍ର ମଧ୍ୟ ଅଶିକ୍ଷିତ ବା ଅଳ୍ପଶିକ୍ଷିତ ପୁରୁଷଲୋକମାନଙ୍କର ନାମ ବଜରି, ଝରି ଇତ୍ୟାଦି ଥିବା ଜଣାଯାଏ ।

* ଏପରି ପ୍ରୟୋଗ କୃଷ୍ଣସିଂହ ମହାଭାରତରେ ମଧ୍ୟ ଦେଖାଯାଏ । ଯଥା -
ଚାଲିବାବେଳେ ତାଙ୍କ ପାଦତଳେ କୁଅଁା,
ଆଙ୍ଗୁଳିରେ ବାଜି ନିହିଲା ପଦ୍ମ ସଞ୍ଚା । (କୃ. ମ. ଭା. - ବିରାଟ ପର୍ବ)

କବି ବଜରି ଦାସଙ୍କ 'ଅର୍ଥଗୋବିନ୍ଦ' ମହାକବି ଜୟଦେବକୃତ ବିଶ୍ୱବିଶ୍ରୁତ ଗୀତଗୋବିନ୍ଦର ଏକ ଅନୁବାଦ । କାନ୍ତକୋମଳ ପଦାବଳୀପୂର୍ଣ୍ଣ ରସାଳ ଗୀତଗୋବିନ୍ଦର ରଚୟିତା ରସିକ ମହାକବି ଜୟଦେବ ଦ୍ୱାଦଶ ଶତାବ୍ଦୀର କେଉଁ ଏକ ମାହେନ୍ଦ୍ର ବେଳାରେ ପୁରୀଜିଲ୍ଲାର କେନ୍ଦୁଲୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଅମରକୃତି ଗୀତଗୋବିନ୍ଦର ଏହି ରଚୟିତା ମହାକବି ଜୟଦେବଙ୍କ ଜନ୍ମସ୍ଥାନ ନେଇ ବହୁ ବିବଦମାନ ଯୁକ୍ତି ପରିଲକ୍ଷିତ ହୋଇଥାଏ । ବଙ୍ଗୀୟମାନେ ଜୟଦେବଙ୍କୁ ବଙ୍ଗଳାର ବୋଲି ଦାବି କରି ଯୁକ୍ତି ଉପସ୍ଥାପନ କଲାବେଳେ ଉତ୍କଳୀୟମାନେ ତାଙ୍କୁ ଉତ୍କଳର ବୋଲି ପ୍ରମାଣିତ କରନ୍ତି । ଏଗୁଡ଼ିକର ସମ୍ୟକ୍ ଗବେଷଣା ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଡକ୍ଟର ନବୀନକୁମାର ସାହୁ, ଶ୍ରୀଯୁକ୍ତ ନୀଳମଣି ମିଶ୍ର ପ୍ରମୁଖ କରିଛନ୍ତି ଏବଂ ତାହା ଅନ୍ୟତ୍ର ବିସ୍ତୃତଭାବରେ ସେମାନଙ୍କ ଦ୍ୱାରା ଆଲୋଚିତ ହୋଇଛି ଓ ଆଲୋଚ୍ୟ ମଧ ହେବ । ବର୍ତ୍ତମାନ ନିମ୍ନରେ ଉଭୟପକ୍ଷର ଯୁକ୍ତି ସଂକ୍ଷେପରେ ପ୍ରଦତ୍ତ ହେଲା ।

**ଜୟଦେବଙ୍କ ଜନ୍ମସ୍ଥାନ ସମ୍ବନ୍ଧୀୟ ଯୁକ୍ତି :**

ଯେଉଁମାନେ ଜୟଦେବଙ୍କୁ ବଙ୍ଗଳାର ବୋଲି କୁହନ୍ତି, ସେମାନେ ତା'ର ପ୍ରମାଣ ସ୍ୱରୂପ ଅଧୋଲିଖିତ ଯୁକ୍ତି ଉପସ୍ଥାପନ କରିଥାନ୍ତି -

୧. ଗୀତଗୋବିନ୍ଦର 'ବାଚଃ ପଲ୍ଲବୟତ୍ୟୁମାପତିଧରଃ ...' ଶ୍ଳୋକରେ ଉମାପତି, ଜୟଦେବ, ଶରଣ, ଆଚାର୍ଯ୍ୟ ଗୋବର୍ଦ୍ଧନ ଓ ଧୋୟୀ କବିଙ୍କର ନାମ ଆସୁଛି । ଏମାନଙ୍କର ଉଲ୍ଲେଖ ଲକ୍ଷ୍ମଣସେନଙ୍କ ନବଦ୍ୱୀପ ସଭାଭବନର ଦ୍ୱାରଦେଶରେ ଏକ ପ୍ରସ୍ତର ଫଳକରେ ନିମ୍ନଲିଖିତ ପ୍ରକାରେ ହୋଇଥିବା ଶ୍ରୀରୂପ ସନାତନ ଗୋସ୍ୱାମୀ ଦେଖିଥିଲେ -

ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତିଃ ।
କବିରାଜଶ୍ଚ ରତ୍ନାନି ସମିତୌ ଲକ୍ଷ୍ମଣସ୍ୟ ଚ ।।

ଅତଏବ ଜୟଦେବ ଲକ୍ଷ୍ମଣସେନଙ୍କ ପଞ୍ଚରତ୍ନ ମଧରୁ ଅନ୍ୟତମ ଥିଲେ ।

୨. ଗୀତଗୋବିନ୍ଦର ଦଶାବତାର ବର୍ଣ୍ଣନାରେ କଚ୍ଛପ ଅବତାରବିଷୟକ ନିମ୍ନ ଗୀତାଂଶରେ ଅଛି -

କ୍ଷିତିରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ,
ଧରଣୀ - ଧରଣ - କିଣ - ଚକ୍ର - ଗରିଷ୍ଠେ ।

ଏଥିରେ 'ପ୍ରେଷ୍ଟେ' ଏବଂ 'ରିଷ୍ଟେ' ଏହି ଅଂଶଦ୍ୱୟର ପୂର୍ଣ୍ଣମିତ୍ରାକ୍ଷରତ୍ୱ ବଙ୍ଗୀୟ ଉଚ୍ଚାରଣ ଦ୍ୱାରା ହିଁ ସିଦ୍ଧ । ଅନ୍ୟଥା ଅନ୍ୟ ପଦମାନଙ୍କରେ ଯେପରି ପୂର୍ଣ୍ଣମିତ୍ରାକ୍ଷରତ୍ୱ ସୁରକ୍ଷିତ, ଏଥିରେ ଉକ୍ତ କ୍ରମର ଭଙ୍ଗ ହେବ ।

୩. ଜୟଦେବଙ୍କ 'କେନ୍ଦୁବିଲ୍ୱ ସମୁଦ୍ରସମ୍ଭବରୋହିଣୀରମଣେନ' ଉକ୍ତିରୁ ଜୟଦେବ ସ୍ୱୟଂ 'କେନ୍ଦୁଲୀ' (ବା କେନ୍ଦୁବିଲ୍ୱ) ତାଙ୍କର ଜନ୍ମଭୂମି ବୋଲି ଲେଖିଯାଇଛନ୍ତି । ଏହି କେନ୍ଦୁଲି ବଙ୍ଗଳାର ବୀରଭୂମି ଜିଲ୍ଲାନ୍ତର୍ବର୍ତ୍ତୀ ଏବଂ ଅଜୟ ନଦର ଉତ୍ତର ପାର୍ଶ୍ୱବର୍ତ୍ତୀ ଗୋଟିଏ ଗ୍ରାମ । ଜୟଦେବ ପ୍ରତ୍ୟହ ଅଠରକୋଶ ଯାଇ ଗଙ୍ଗାସ୍ନାନ କରୁଥିବାରୁ ଗଙ୍ଗା ଅଜୟ ନଦର ଗୋଟିଏ ଧାରରେ ରହିଲେ । ଏହା ଭକ୍ତମାଳ ଆଦି ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

୪. ଗୀତଗୋବିନ୍ଦର ଲଳିତମଧୁର ପଦବିନ୍ୟାସ ସହିତ ବଙ୍ଗଳା ସାହିତ୍ୟର ମଧୁର ପଦବିନ୍ୟାସର ସାମ୍ୟ ପରିଲକ୍ଷିତ ହୁଏ ।

୫. ଗୀତଗୋବିନ୍ଦର ୧୨ଶ ସର୍ଗରେ ଅଛି -

ଯଦ୍‌ଗାନ୍ଧର୍ବକଳାସୁ କୌଶଳମନୁ ଧ୍ୟାନଂ ଚ ଯଦ୍‌ବୈଷ୍ଣବଂ
ଯଚ୍ଛୃଙ୍ଗାରବିବେକତତ୍ତ୍ୱମପି ଯଦ୍ କାବ୍ୟେଷୁ ଲୀଳାୟିତମ୍ ।
ତତ୍ସର୍ବଂ **ଜୟଦେବପଣ୍ଡିତକବେଃ** କୃଷ୍ଣୈକତାନାତ୍ମନଃ
ସାନନ୍ଦାଃ ପରିଶୀଳୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦତଃ ॥

ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ କାଙ୍ଗଡ଼ା ରାଜାଙ୍କ ଆଶ୍ରୟରେ ଥିବା କେଶବ ମିଶ୍ର ସ୍ୱ-'ଅଳଙ୍କାରଶେଖର' ଗ୍ରନ୍ଥରେ ଲେଖିଛନ୍ତି -

ପ୍ରାକ୍ ପ୍ରତ୍ୟକ୍ ପୃଥିବୀଭୃତୋଃ ପରିଷଦି ପ୍ରଖ୍ୟାତସଂଖ୍ୟାବତା -
ମହ୍ନାୟାଦ୍ଭୁତତର୍କକର୍କଶତୟା ବିଚ୍ଛିଦ୍ୟ ବିଦ୍ୟାମଦମ୍ ।
ଯେ କେଽପ୍ୟୁତ୍କଳଭୂପତେ ! ତବ ସଭାସମ୍ଭାବିତାଃ ପଣ୍ଡିତାଃ
ପତ୍ରଂ ଶ୍ରୀଜୟଦେବପଣ୍ଡିତକବିସ୍ତନ୍ମୂର୍ଧ୍ନି ବିନ୍ୟସ୍ୟତି ।

ଉଭୟ ଶ୍ଳୋକରେ ଜୟଦେବପଣ୍ଡିତ କବି ବୋଲି ଉଲ୍ଲେଖ ରହିଛି । ଅତଏବ କେଶବ ମିଶ୍ରଙ୍କ ଉଦ୍ଦିଷ୍ଟ ଜୟଦେବ ପଣ୍ଡିତ କବି ଗୀତଗୋବିନ୍ଦକାର ହିଁ ଅଟନ୍ତି ଏବଂ ଉକ୍ତ ଶ୍ଳୋକରୁ ଜୟଦେବଙ୍କର ବହିର୍ଦ୍ଦେଶାଗତତ୍ୱ ପ୍ରମାଣିତ ହେଉଛି ।

କିନ୍ତୁ ଉତ୍କଳୀୟମାନଙ୍କ ପକ୍ଷରୁ ଜୟଦେବ ପୁରୀଜିଲ୍ଲାନ୍ତର୍ବର୍ତ୍ତୀ କେନ୍ଦୁଲୀ ଗ୍ରାମ ବାସ୍ତବ୍ୟ ଏବଂ ତାଙ୍କ ଗୀତଗୋବିନ୍ଦ ଏ ଦେଶରେ ସମ୍ଭୂତ, ସମ୍ୟକ୍ ପ୍ରଚଳିତ ଓ ସମଧିକ ଆଦୃତ ବୋଲି କହିବା ସଙ୍ଗେ ସଙ୍ଗେ ଅଧୋଲିଖିତ ଯୁକ୍ତିମାନ ଉପସ୍ଥାପନ କରିଥାନ୍ତି -

୧. ଲକ୍ଷ୍ମଣସେନଙ୍କ ସଭାଗୃହର ଦ୍ୱାରଦେଶରେ ସନାତନ ଗୋସ୍ୱାମୀ ଦେଖିଥିବା -

ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତିଃ ।
କବିରାଜଶ୍ଚ ରତ୍ନାନି ସମିତୌ ଲକ୍ଷ୍ମଣସ୍ୟ ଚ ॥

ଏହି ଶ୍ଳୋକରେ ବର୍ଣ୍ଣିତ ଲକ୍ଷ୍ମଣସେନ କେଉଁ ଲକ୍ଷ୍ମଣସେନ ଏବଂ ଏଥିରେ ବର୍ଣ୍ଣିତ ସମସ୍ତ କବି ସମକାଳୀନ ଓ ଏକ ସଭାମଣ୍ଡନ କରୁଥିଲେ କି ନାହିଁ ଏ ସମ୍ବନ୍ଧରେ ବହୁ ସନ୍ଦେହ ଉତ୍ଥାପିତ ହୁଏ ।

ଲକ୍ଷ୍ମଣସେନଙ୍କ ସମୟ ନେଇ ମଧ ବହୁ ବିସମ୍ବାଦ ପରିଦୃଷ୍ଟ ହୁଏ । ପ୍ରସିଦ୍ଧ ଇତିହାସ ଲେଖକ ମିନହାଜୀ ଉଦ୍ଦିନ୍ ସ୍ୱ 'ତବକାତ୍-ଇ-ନାସିରୀ' ଗ୍ରନ୍ଥରେ ଲେଖିଛନ୍ତି ଯେ ଯେତେବେଳେ ବଖ୍ତିୟାର୍ ଖିଲ୍‌ଜିଙ୍କ ଦ୍ୱାରା ବଙ୍ଗଳା ଅଧିକୃତ ହେଲା, ସେତେବେଳେ 'ଲଛମନିୟା' ନାମକ ରାଜା ବଙ୍ଗଳାରେ ରାଜତ୍ୱ କରୁଥିଲେ । କିନ୍ତୁ ବଙ୍ଗଦେଶର ଇତିହାସରୁ ଜଣାଯାଏ ଯେ, ବଙ୍ଗଳାରେ ଲଛମନିୟା ନାମରେ କେହି ରାଜା ନଥିଲେ । ହୁଏତ ବଲ୍ଲାଳସେନଙ୍କ ପୁତ୍ର ଲକ୍ଷ୍ମଣସେନଙ୍କର ଅପଭ୍ରଂଶରେ କିମ୍ବା ତାଙ୍କ ପୁତ୍ର ମାଧବସେନ ତଥା କେଶବସେନ (ବା ଲାକ୍ଷ୍ମଣେୟ)ଙ୍କ ଅପଭ୍ରଂଶରେ ଲଛମନିୟା ହୋଇଥାଇ ପାରେ । ମୁସଲମାନ ଲେଖକଙ୍କ ମତରେ ଏହି ଲଛମନିୟା ୮୦ ବର୍ଷ ରାଜତ୍ୱ କରିଥିଲେ ।* ଉକ୍ତ ଲଛମନିୟାଙ୍କ କାଳ ଅଦ୍ୟାବଧି ନିର୍ଦ୍ଧାରିତ ହୋଇପାରି ନ ଥିଲେ ସୁଦ୍ଧା ସେନ୍ ବଂଶାବଳୀ ନିମ୍ନଲିଖିତ ଭାବରେ ଥିଲା ବୋଲି କୁହାଯାଏ -

---

* "Rai Lakshmanish whose seat of Government was the city of Nudiah and who was a very great Rai and had been on the throne for a period of eighty years" - 'Tabakat-I-Nasiri' translated by Raverty, pp. 554.




ଉପଲବ୍ଧ ଦାନପତ୍ରଗୁଡ଼ିକରେ ମଧ୍ୟ ସଂବତ୍ ଅଭାବରୁ କାଳ ନିର୍ଣ୍ଣୟ ଠିକ୍ ଭାବରେ ହୋଇପାରୁ ନାହିଁ । କିନ୍ତୁ ବିଦ୍ୱାନ୍ ବଲ୍ଲାଳ ସେନଙ୍କ 'ଦାନସାଗର'ରୁ ତାଙ୍କର କାଳ ଏକାଦଶ ଶତାବ୍ଦୀର ଶେଷାର୍ଦ୍ଧ ବୋଲି ଧରାଯାଏ । ଅତଏବ ବଲ୍ଲାଳ ସେନଙ୍କ ପୁତ୍ର ଲକ୍ଷ୍ମଣ ସେନଙ୍କ ସମୟ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ବୋଲି ଧରାଯାଏ ।

କିନ୍ତୁ ଉକ୍ତ ଶିଳାଲେଖରେ ବର୍ଣ୍ଣିତ 'ଗୋବର୍ଦ୍ଧନ' ଆର୍ଯ୍ୟସପ୍ତଶତୀକାର ଆଚାର୍ଯ୍ୟ ଗୋବର୍ଦ୍ଧନ ନୁହନ୍ତି କିମ୍ବା ଗୀତଗୋବିନ୍ଦରେ ବର୍ଣ୍ଣିତ 'ଆଚାର୍ଯ୍ୟଗୋବର୍ଦ୍ଧନ'ଙ୍କର ଲକ୍ଷ୍ମଣସେନଙ୍କ ସଭା ସହ କିଛି ସମ୍ବନ୍ଧ ନାହିଁ । ବରଂ ଆଚାର୍ଯ୍ୟ ଗୋବର୍ଦ୍ଧନ ଓ ତାଙ୍କର କନିଷ୍ଠ ଭ୍ରାତା ଉଦୟନ ଆଚାର୍ଯ୍ୟ ଉଭୟେ ଉତ୍କଳୀୟ ବୋଲି ପ୍ରମାଣ ମିଳୁଛି * ।

ଆର୍ଯ୍ୟାସପ୍ତଶତୀରେ ଅଛି -

ସକଳକଳାଃ କଳୟିତୁଂ ପ୍ରଭୋଃ ପ୍ରବନ୍ଧସ୍ୟ କୁମୁଦବନ୍ଧୋଶ୍ଚ ।
ସେନକୁଳତିଳକଭୂପତିରେକୋ ରାକା ପ୍ରଦୋଷଶ୍ଚ ॥

---

* ଦ୍ରଷ୍ଟବ୍ୟ - Shri K. N. Mahapatra, Introduction to Descriptive Catalogue of Sanskrit Manuscripts, Vol. II, Sec. II, p. 28 - 35, 38.

ଏଥିରେ ଥିବା 'ସେନକୁଳତିଳକଭୂପତି' ସେତୁବନ୍ଧ କାବ୍ୟ ପ୍ରଣେତା ପ୍ରବର ସେନଙ୍କୁ ଲକ୍ଷ୍ୟ କରି ଆଚାର୍ଯ୍ୟ ଗୋବର୍ଦ୍ଧନ କହିଛନ୍ତି । କାରଣ ବାଲ୍ମୀକି, ବ୍ୟାସ, ଗୁଣାଢ୍ୟ, କାଳିଦାସ, ଭବଭୂତି ଓ ବାଣଭଟ୍ଟ ଇତ୍ୟାଦିଙ୍କ କୃତିର ପ୍ରଶଂସା ଉଲ୍ଲେଖବେଳେ 'ସେତୁବନ୍ଧ କାବ୍ୟ' ପ୍ରବନ୍ଧ ପ୍ରଣେତା ପ୍ରବର ସେନଙ୍କୁ ହିଁ 'ସେନକୁଳତିଳକଭୂପତି' ବୋଲି କୁହାଯାଇଥିବା ଅଧିକ ସଙ୍ଗତ ମନେହୁଏ ।

ଉକ୍ତ ଶିଳାଲେଖରେ ଉଲ୍ଲେଖଥିବା 'ଶରଣ'ଙ୍କ କୌଣସି କୃତି ଦେଖିବାକୁ ମିଳେ ନାହିଁ । 'ସଦୁକ୍ତିକର୍ଣ୍ଣାମୃତ'ରେ ଉଦ୍ଧୃତ ତାଙ୍କର ଗୋଟିଏ ପଙ୍‌କ୍ତି 'ସେବାଭିର୍ଯଦି ସେନବଂଶତିଳକାଦାସାଦନୀୟାଃ ଶ୍ରିୟଃ'ରୁ ସେ କୌଣସି ସେନବଂଶୀ ରାଜାଙ୍କ ପୃଷ୍ଠପୋଷକତା ଲାଭ କରିଥିବା ଜାଣିହୁଏ ।

ଉମାପତିଧରଙ୍କ ଦେଓପଡ଼ା ଶିଳାଲେଖରେ ଗଙ୍ଗନୃପତି ରାଘବ ଦେବଙ୍କ ପରାଜୟ ଉଲ୍ଲେଖ ଥିବାରୁ ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ପ୍ରମୁଖ, ଏହି ଉମାପତିଙ୍କୁ ଲକ୍ଷ୍ମଣସେନଙ୍କ ସମକାଳୀନ ବୋଲି ସ୍ୱୀକାର କରନ୍ତି ।* ଏହି ଉମାପତିଙ୍କ ବିଷୟ ହିଁ ଗୀତଗୋବିନ୍ଦର ପ୍ରୋକ୍ତ ଶ୍ଳୋକରେ ଉଲ୍ଲେଖ କରାଯାଇଛି ।

କବିରାଜ ଧୋୟୀ, ମହାରାଜା ଲକ୍ଷ୍ମଣସେନଙ୍କ ନିକଟକୁ କୁବଳୟାବତୀଙ୍କ ପ୍ରେରିତ ପ୍ରେମସନ୍ଦେଶକୁ 'ପବନ ଦୂତ'ର ବିଷୟବସ୍ତୁ କରିଥିବାରୁ, ସେ ମଧ୍ୟ ଲକ୍ଷ୍ମଣସେନଙ୍କ ସଭାର କବି ।

ଅତଏବ, ତଥାକଥିତ ଶିଳାଲେଖର ପାଞ୍ଚଜଣଙ୍କ ମଧ୍ୟରୁ ଉମାପତିଧର ଓ ଧୋୟୀ ଲକ୍ଷ୍ମଣସେନଙ୍କ ଦରବାରର । ଶରଣ କବି କୌଣସି ସେନବଂଶୀୟ ନରପତିଙ୍କ ଆଶ୍ରୟପ୍ରାପ୍ତ ହୋଇଥିଲେ । ଏହି ତିନିଜଣଙ୍କ ସହ ଆଚାର୍ଯ୍ୟ ଗୋବର୍ଦ୍ଧନ ଓ ଜୟଦେବଙ୍କୁ ମିଶାଇ ଉଲ୍ଲେଖ କରାଯାଇଥିବା ଲକ୍ଷ୍ମଣସେନଙ୍କ 'ପଞ୍ଚରତ୍ନ' ସମସାମୟିକ ନୁହନ୍ତି । ପୁନଶ୍ଚ ଉକ୍ତ ଶିଳାଲେଖ ସନାତନ ଗୋସ୍ୱାମୀ ଦେଖିଥିଲେ ବୋଲି ସେ ନିଜେ ଲେଖିନାହାନ୍ତି । ତାଙ୍କ ପରେ ଅନ୍ୟମାନେ କହିଛନ୍ତି ଏବଂ ତଥାକଥିତ ଉକ୍ତ ଶିଳାଲେଖଟି କେଉଁଠି ଦେଖିବାକୁ ମିଳୁନାହିଁ । ତେଣୁ ତାହା ଉପରେ ନିର୍ଭର କରି କୌଣସି ନିର୍ଦ୍ଦିଷ୍ଟ ନିଷ୍ପତ୍ତିରେ ଉପନୀତ ହେବା ଉଚିତ ହେବ ନାହିଁ ।

* Shri K. N. Mahapatra - Introduction to Descriptive Catalogue of Sanskrit Manuscripts, Vol-II, p. 39.

ଗୀତଗୋବିନ୍ଦରେ ଏହି ପାଞ୍ଚଜଣଙ୍କ ନାମୋଲ୍ଲେଖ ସହ ସେମାନଙ୍କ ବୈଶିଷ୍ଟ୍ୟ କେବଳ ପ୍ରତିପାଦନ କରାଯାଇଛି । ଏପରି ପରମ୍ପରା ସଂସ୍କୃତ-ସାହିତ୍ୟ ଜଗତରେ ନୂତନ ନୁହେଁ । ଐହୋଲ ଶିଳାଲେଖର ରବିକୀର୍ତ୍ତି ସ୍ୱନାମ ସହ କାଳିଦାସ ଓ ଭାରବିଙ୍କ ନାମୋଲ୍ଲେଖ କରିଛନ୍ତି -

'ସ ବିଜୟତାଂ ରବିକୀର୍ତ୍ତିଃ କବିତାଶ୍ରିତକାଳିଦାସଭାରବିକୀର୍ତ୍ତିଃ'

'ବାଳରାମାୟଣ'ରେ ଲେଖିଛନ୍ତି -

ବଭୂବ ବଲ୍ମୀକଭବଃ କବିଃ ପୁରା
ତତଃ ପ୍ରପେଦେ ଭୁବି ଭର୍ତ୍ତୃମେଣ୍ଠତାମ୍ ।
ସ୍ଥିତଃ ପୁନର୍ଯୋ ଭବଭୂତିରେଖୟା
ସ ବର୍ତ୍ତତେ ସମ୍ପ୍ରତି ରାଜଶେଖରଃ ।।

ଏଥିରେ ବାଲ୍ମୀକି, ଭର୍ତ୍ତୃହରି, ମେଣ୍ଠ, ଭବଭୂତିଙ୍କ ନାମ ସହ କବି ନିଜର ନାମୋଲ୍ଲେଖ କରିଛନ୍ତି । ଏହାଦ୍ୱାରା ଏ ସମସ୍ତ କବି କୌଣସି ଗୋଟିଏ କାଳର ବା ସ୍ଥାନର କିମ୍ବା କୌଣସି ଜଣକର ପୃଷ୍ଠପୋଷକତା ଲାଭ କରିଥିଲେ ବୋଲି କୁହାଯାଇ ପାରିବ ନାହିଁ । କବିରାଜ ପଣ୍ଡିତ ମଧ ସୁବନ୍ଧୁ ଓ ବାଣଭଟ୍ଟଙ୍କ ସହ ନିଜର ନାମୋଲ୍ଲେଖ କରିଯାଇଛନ୍ତି * । ଆଚାର୍ଯ୍ୟ ଗୋବର୍ଦ୍ଧନ 'ଆର୍ଯ୍ୟାସପ୍ତଶତୀ'ରେ ଏବଂ ମହାକବି ବାଣ 'ହର୍ଷଚରିତ'ରେ ଏହିପରି ବହୁ ଶ୍ଳୋକରେ ପୂର୍ବସୂରିମାନଙ୍କର ନାମ ନିର୍ଦ୍ଦେଶ କରିଯାଇଛନ୍ତି । ଜୟଦେବ ମଧ ଗୀତଗୋବିନ୍ଦର -

ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେ ।
ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନଃ
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିକ୍ଷ୍ମାପତିଃ ।।

ଏହି ଶ୍ଳୋକରେ ଜୟଦେବ ପ୍ରସିଦ୍ଧି ଲାଭ କରିଥିବା କବିମାନଙ୍କର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ପ୍ରାବୀଣ୍ୟ ଦର୍ଶାଇ ସ୍ୱକୀୟ ବୈଶିଷ୍ଟ୍ୟ ପ୍ରଦର୍ଶନ କରିଛନ୍ତି ।

* ରାଘବପାଣ୍ଡବୀୟମ୍ (୧/୪୧)

ବିଶେଷତଃ ଲକ୍ଷ୍ମଣସେନଙ୍କ ଦରବାରରେ ଯଦି କେହି ଜୟଦେବ ଥିଲେ, ତେବେ ସେ ଗୀତଗୋବିନ୍ଦକାରଙ୍କ ବ୍ୟତୀତ ଅନ୍ୟ କେହି ମଧ ହୋଇପାରନ୍ତି । ସଂସ୍କୃତ ସାହିତ୍ୟର ଇତିହାସରେ ବହୁ ଜୟଦେବ ନାମଧାରୀ ଦେଖାଯାନ୍ତି । ସେମାନଙ୍କ ମଧ୍ୟରୁ ପ୍ରଧାନ ହେଉଛନ୍ତି -

(କ) ରାମାୟଣ କଥାର ଅବଲମ୍ବନରେ ରଚିତ ପ୍ରସନ୍ନ ରାଘବର କର୍ତ୍ତା କୌଣ୍ଡିନ୍ୟ ଗୋତ୍ରୀୟ ବ୍ରାହ୍ମଣ ଜୟଦେବ । ତାଙ୍କର ପିତାଙ୍କ ନାମ ମହାଦେବ, ମାତାଙ୍କ ନାମ ସୁମିତ୍ରା ଓ ଗୁରୁଙ୍କ ନାମ ହରି ମିଶ୍ର ଥିଲା । ୧୨୫୭ରେ କାଶ୍ମୀରୀୟ କବି କହ୍ଲଣଙ୍କ 'ସୂକ୍ତିମୁକ୍ତାବଳୀ'ରେ ପ୍ରସନ୍ନ ରାଘବର ଶ୍ଳୋକ ଉଦ୍ଧୃତ ହୋଇଥିବା ଦେଖାଯାଏ । ଏହି ପ୍ରସନ୍ନ ରାଘବକର୍ତ୍ତା ଜୟଦେବ ହିଁ 'ଚନ୍ଦ୍ରାଲୋକ' ନାମକ ଅଳଙ୍କାର ଗ୍ରନ୍ଥର ପ୍ରଣେତା ।

(ଖ) ତ୍ରିପୁର ସୁନ୍ଦରୀ ସ୍ତୋତ୍ର' ପ୍ରଣେତାଙ୍କ ନାମ ମଧ ଜୟଦେବ ଥିଲା ।

(ଗ) 'ରସାମୃତ' ବୈଦ୍ୟଶାସ୍ତ୍ର ରଚୟିତା ମଧ ଜଣେ ଜୟଦେବ ।

(ଘ) ନୃସିଂହ ତନୁଜ ଜୟଦେବ 'ନ୍ୟାୟମଞ୍ଜରୀସାର'ର ପ୍ରଣେତା ।

(ଙ) ଗଙ୍ଗାସ୍ତବର ରଚୟିତା 'ଧୀର ଜୟଦେବ' ।

(ଚ) 'ଈଶତତ୍ତ୍ୱ' ନାମକ ବ୍ୟାକରଣ ରଚୟିତା ମଧ ଜଣେ ଜୟଦେବ ।

(ଛ) 'ରତିମଞ୍ଜରୀ' ନାମକ କ୍ଷୁଦ୍ର କାମଶାସ୍ତ୍ର ପ୍ରଣେତାଙ୍କ ନାମ ଜୟଦେବ ।

(ଜ) 'ଅଳଙ୍କାର ଶତକ' ପ୍ରଣେତାଙ୍କ ନାମ ମଧ ଜୟଦେବ ।

(ଝ) 'ପୀୟୂଷ ଲହରୀ'ର ରଚୟିତା ମଧ ଜୟଦେବ ।

ଏହିପରି ବହୁ ଜୟଦେବ ନାମଧାରୀ ଥିଲେ, କିନ୍ତୁ ସବୁ ଜୟଦେବ ଏକ ନ ଥିଲେ କିମ୍ବା ସମସ୍ତେ ଗୀତଗୋବିନ୍ଦ ରଚନା କରି ନଥିଲେ ।

୨. ଗୀତଗୋବିନ୍ଦର ପ୍ରୋକ୍ତ କଚ୍ଛପ ଅବତାର ବର୍ଣ୍ଣନାରେ ଥିବା 'ପୃଷ୍ଠେ' ସହ 'ରିଷ୍ଟେ'ର ମେଳରୁ ଜୟଦେବ ବଙ୍ଗାଳୀ ବୋଲି ଯୁକ୍ତିକୁ ଅଗ୍ରାହ୍ୟ କରିବାରେ ଉତ୍କଳୀୟ ଯୁକ୍ତି ହେଉଛି - ଉତ୍କଳରେ 'ଋ'ର 'ରୁ' ଓ 'ରି', ଏହି ଉଭୟ ଉଚ୍ଚାରଣ ରହିଛି । ତେଣୁ ସଂସ୍କୃତ ମୃଗ, ତୃଣ ଇତ୍ୟାଦି ଶବ୍ଦ ଓଡ଼ିଆ ଭାଷାରେ ମିରିଗ ଓ ତିରିଣ ହୋଇଥାଏ । ଓଡ଼ିଆରେ ଯେପରି 'ବୃଦ୍ଧ' ଶବ୍ଦରୁ 'ବୁଢ଼ା' ହୁଏ, ବଙ୍ଗଳାରେ ମଧ ସେପରି 'ବୁଢ଼ୋ' ହୋଇଛି । କେବଳ ସେତିକି ନୁହେଁ ୧୫ଶ ଶତାବ୍ଦୀୟ ମହାକବି ସାରଳା ଦାସଙ୍କ ସାରଳା ମହାଭାରତରେ 'ବୃକୋଦର' ଶବ୍ଦଟି

'ବ୍ରିକୋଦର' ବୋଲି ଆମୂଳଚୂଳ ତାଳପତ୍ର ପୋଥିରେ ଲେଖାଅଛି । ସେହିପରି ସୃଜିଲେ > ସ୍ରିଜିଲେ (ପଦ ୨୨୫/୧, ସା.ମ. ଆଦିପର୍ବ, ୨ୟ ଭାଗ, ପୃ. ୬୧୮) ଓ ତୃପ୍ତି > ତ୍ରିପୁତି (ପଦ ୧୮/୨, ସା.ମ. ଆଦିପର୍ବ, ୨ୟ ଭାଗ, ପୃ. ୬୩୮) 'ର' ଧ୍ୱନି 'ରି'ରେ ପରିଣତ ହୋଇଛି । ଏହିପରି ଅନେକ ଉଦାହରଣ ରହିଛି । ଅତଏବ, ଏଥିପାଇଁ ଆଜିର ଉଚ୍ଚାରଣ ପରିବର୍ତ୍ତେ ଗୀତଗୋବିନ୍ଦକାଳୀନ ଉଚ୍ଚାରଣହିଁ ଦେଖିବାକୁ ହେବ ଏବଂ ତାହା ଉପରେ ଭିତ୍ତିକରି ଆଲୋଚନା କରିବାକୁ ହେବ ।

୩. ଜୟଦେବଙ୍କ ଜନ୍ମସ୍ଥାନ ପୁରୀଜିଲ୍ଲାର 'କେନ୍ଦୁଲୀଶାସନ' ଏକ ପ୍ରାଚୀନ ସାଂସ୍କୃତିକ ଐତିହ୍ୟପୂର୍ଣ୍ଣ ସ୍ଥାନ । ଏଠାରେ ପ୍ରାଚୀ, କୁଶଭଦ୍ରା ଓ ଧନୁଆ - ଏହି ତିନି ନଦୀର ସଙ୍ଗମ ଦ୍ୱାରା ତ୍ରିବେଣୀ ସଙ୍ଗମ ହୋଇଛି । ମାଘ କୃଷ୍ଣ ଅମାବାସ୍ୟା ଦିନ ଏଠାରେ ତ୍ରିବେଣୀ ସ୍ନାନ କରିବା ପାଇଁ ବହୁ ଯାତ୍ରୀଙ୍କର ସମାଗମ ହୋଇଥାଏ । ପାରମ୍ପରିକ ପ୍ରଥା ଅନୁସାରେ ପୂର୍ବେ ଯେଉଁମାନେ ପାଦରେ ଚାଲି ଚାଲି କୋଣାର୍କରେ ମାଘ ଶୁକ୍ଳ ୭ମୀ ଦିନ ପ୍ରଖ୍ୟାତ ଚନ୍ଦ୍ରଭାଗା ବୁଡ଼ ପକାଉଥିଲେ, ସେମାନେ ଏହି ତ୍ରିବେଣୀ ସଙ୍ଗମରେ ସ୍ନାନ କରିଯାଉଥିଲେ । ଏହି ତ୍ରିବେଣୀ ସ୍ନାନର ପ୍ରାଚୀନତ୍ୱ ଅନ୍ୟୂନ ୧୩ଶ ଶତାବ୍ଦୀ ବୋଲି ନିର୍ଦ୍ଧାରଣ କରାଯାଇପାରେ । *

'ସରସ୍ୱତୀ-ପ୍ରାଚୀ' ସହ ଗଙ୍ଗା ଏଠାରେ ଉତ୍ତରାଭିମୁଖିନୀ ହୋଇ ତ୍ରିବେଣୀ ସଙ୍ଗମ ସମ୍ଭବ ହୋଇଛି ବୋଲି ପଦ୍ମପୁରାଣ ଓ ପ୍ରାଚୀମାହାତ୍ମ୍ୟରୁ ସ୍ପଷ୍ଟ ପ୍ରମାଣ ମିଳେ ** ।

ଜୟଦେବଙ୍କ ଜନ୍ମସ୍ଥାନ ଏହି କେନ୍ଦୁଲୀର ଅଦୂରରେ ପ୍ରବାହିତ ପ୍ରାଚୀ ନଦୀର ଉପତ୍ୟକା ମାଧବ ସଭ୍ୟତା ଭରା । ବର୍ତ୍ତମାନ ମଧ୍ୟ ଏହାର ପ୍ରମାଣ ସ୍ୱରୂପ ଏଠାରୁ ବହୁ ପୁରାତତ୍ତ୍ୱ ସାମଗ୍ରୀ ଉପଲବ୍ଧ ହେଉଛି ଏବଂ ନିଆଳିମାଧବ, ମୁଦୁଗଲ ମାଧବ, ପ୍ରାଚୀମାଧବ, ତ୍ରିବେଣୀମାଧବ, ଗୁପ୍ତମାଧବ ଓ ଲତାହରଣ ମାଧବ ପ୍ରଭୃତି ପୂଜା ପାଉଛନ୍ତି । ପୁଣି ପୁରୀ ଜିଲ୍ଲାର କେନ୍ଦୁଲୀରେ

---

* ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର - 'Introduction to Descriptive Catalogue of Sanskrit Manuscripts of Orissa' Vol. II, pp. 44.

** ଦ୍ରଷ୍ଟବ୍ୟ - ସଦାଶିବ ସଂସ୍କୃତ ମହାବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ପ୍ରକାଶିତ 'ସ୍ମରଣିକା'ରେ ପଣ୍ଡିତ ଭାଗବତ ପ୍ରସାଦ ତ୍ରିପାଠୀଙ୍କ 'ଶ୍ରୀଗୀତଗୋବିନ୍ଦକାର ଜୟଦେବଙ୍କ ଜନ୍ମସ୍ଥାନ ଓ କାଳ' ଶୀର୍ଷକ ପ୍ରବନ୍ଧ, ପୃଷ୍ଠା ୨୧-୨୪ ।

୯/୧୦ମ ଶତାବ୍ଦୀରୁ ରାଧାମାଧବଙ୍କ ପୂଜା ପ୍ରଚଳିତ; କିନ୍ତୁ ବୀରଭୂମି କେନ୍ଦୁଲୀରେ ୧୬୦୫ ଖ୍ରୀଷ୍ଟାବ୍ଦରେ ବର୍ଦ୍ଧମାନ ରାଜବଂଶ କର୍ତ୍ତୃକ ପ୍ରତିଷ୍ଠିତ 'ରାଧାବିନୋଦ'ଙ୍କ ପୂଜା ହେଉଛି* । ପୁଣି ଗ୍ରାମଟିର 'କେନ୍ଦୁବିଲ୍ୱ' ନାମକୁ ବିଚାର କଲେ, କେନ୍ଦୁ ଶବ୍ଦଟି ଗୋଟିଏ ଖାଣ୍ଟି ଓଡ଼ିଆ ଶବ୍ଦ । ଓଡ଼ିଶା ମଧ୍ୟ କେନ୍ଦୁ ଓ କେନ୍ଦୁପତ୍ର ଲାଗି ପ୍ରସିଦ୍ଧ । ସଂସ୍କୃତରେ 'ତିନ୍ଦୁକ' ଶବ୍ଦର ଅନୁକରଣରେ ବଙ୍ଗଳାରେ 'ତେନ୍ଦୁ' ଶବ୍ଦ କେନ୍ଦୁ ଅର୍ଥରେ ପ୍ରଚଳିତ । କିନ୍ତୁ 'କେନ୍ଦୁ' ଶବ୍ଦ ବଙ୍ଗଳାରେ ପ୍ରଚଳିତ ନୁହେଁ । ତେଣୁ ଅପ୍ରଚଳିତ ଶବ୍ଦର ଅବଲମ୍ବନରେ ତାଦୃଶ ସଂଜ୍ଞା ଶବ୍ଦର ସୃଷ୍ଟି ସମ୍ଭବ ନୁହେ ବୋଲି କେତେକ ମନେ କରନ୍ତି ** ।

୪. ଗୀତଗୋବିନ୍ଦରେ ବ୍ୟବହୃତ 'ମାଳବ, ବସନ୍ତ, ରାମକିରୀ, ଗୁଣ୍ଡକିରୀ, ଭୈରବ, ଗୁର୍ଜରୀ, କର୍ଣ୍ଣାଟକ, ଦେଶୀବରାଡ଼ୀ, ବରାଡ଼ୀ, ବିଭାସ, ପ୍ରଭୃତି ରାଗ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବହୁଳ ଭାବରେ ବ୍ୟବହୃତ । ଗୀତଗୋବିନ୍ଦର ପ୍ରଭାବରେ ଓଡ଼ିଶାରେ ବହୁ ପ୍ରାଚୀନ କାବ୍ୟ ରଚିତ ହୋଇଛି ଏବଂ ଗୀତଗୋବିନ୍ଦର ବହୁ ପ୍ରାଚୀନ ଅନୁବାଦ ମଧ୍ୟ ରହିଛି । ଏତଦ୍‌ବ୍ୟତୀତ ବର୍ତ୍ତମାନ ଉପଲବ୍ଧ ହେଉଥିବା ଟୀକାମାନଙ୍କ ମଧ୍ୟରେ ଉତ୍କଳୀୟ କବିରାଜ ନାରାୟଣ ଦାସଙ୍କ 'ସର୍ବାଙ୍ଗସୁନ୍ଦରୀ ଟୀକା' ଗୀତଗୋବିନ୍ଦର ପ୍ରାଚୀନତମ ଟୀକା । ଗୀତଗୋବିନ୍ଦର ସର୍ବପ୍ରଥମ 'ଭାବବିଭାବିନୀ' ଟୀକାକାର ଉଦୟନ ମଧ୍ୟ ଉତ୍କଳୀୟ । ଏଠାରେ ଗୀତଗୋବିନ୍ଦର ଅନୁସରଣରେ ବହୁ ସଂସ୍କୃତ ଗୀତିକାବ୍ୟ ଓ ନାଟକ ମଧ୍ୟ ପ୍ରଣୀତ ହୋଇଥିଲା । ସେଥିମଧ୍ୟରୁ ଗଜପତି ପୁରୁଷୋତ୍ତମଦେବଙ୍କ 'ଅଭିନବ ଗୀତଗୋବିନ୍ଦ' (ଖ୍ରୀ.୧୪୯୦) ରାମାନନ୍ଦ ପଟ୍ଟନାୟକଙ୍କ 'ଜଗନ୍ନାଥବଲ୍ଲଭ ନାଟକ' (ଖ୍ରୀ.୧୫୦୦) ପ୍ରଧାନ । ଓଡ଼ିଶାର ସଙ୍ଗୀତଶାସ୍ତ୍ରରେ ମଧ୍ୟ ଗୀତଗୋବିନ୍ଦର ପ୍ରଭୂତ ପ୍ରଭାବ ପରିଲକ୍ଷିତ ହୁଏ । ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଙ୍ଗୀତରେ ଗୀତଗୋବିନ୍ଦର ବ୍ୟବହାରରୁ ଗୀତଗୋବିନ୍ଦ ସହ ଉତ୍କଳୀୟ ପ୍ରାଚୀନ ପରମ୍ପରାର ସମ୍ବନ୍ଧ ସ୍ପଷ୍ଟ ପ୍ରତିପନ୍ନ ହୁଏ ।

୫. କେଶବ ମିଶ୍ରଙ୍କ 'ଅଳଙ୍କାର ଶେଖର'ରୁ ଜୟଦେବଙ୍କ ବହିର୍ଦ୍ଦେଶାଗତତ୍ୱ ଯୁକ୍ତିକୁ ଖଣ୍ଡନ କରି କୁହାଯାଏ ଯେ, ଅଳଙ୍କାର ଶେଖରର 'ପ୍ରାକ୍‌ପ୍ରତ୍ୟକ୍‌ପୃଥିବୀଭୃତୋଃ...' ଶ୍ଲୋକ, ଯାହାର

---

* କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ 'ଶ୍ରୀ ଗୀତଗୋବିନ୍ଦ ଆଲୋଚନା' ପୃ. ୪୬୦-୪୬୧ ।

** ପଣ୍ଡିତ ଭାଗବତ ପ୍ରସାଦ ତ୍ରିପାଠୀଙ୍କ ପ୍ରବନ୍ଧ ପୃ. ୧୪ ।

ଅବଲମ୍ବନରେ ଜୟଦେବ ବାହାରୁ ଉତ୍କଳକୁ ଆସିଥିଲେ ବୋଲି କୁହାଯାଏ, ତାହା ଏକ ପ୍ରକ୍ଷିପ୍ତ ଶ୍ଳୋକ । ଅଳଙ୍କାର ଶେଖର ସମ୍ପାଦକ ମଧ୍ୟ ପାଦଟୀକାରେ ଲେଖିଛନ୍ତି -'ପଦ୍ୟମିଦଂ ଗ-ପୁସ୍ତକେ ନୋପଲଭ୍ୟତେ' । ପୁନଶ୍ଚ ଉକ୍ତ ଗ୍ରନ୍ଥ ପ୍ରସଙ୍ଗରେ ମଧ୍ୟ ସେଇ ଶ୍ଳୋକଟି ସଂଗତବୋଧ ହୁଏ ନାହିଁ । ପୁଣି ଅନ୍ୟ ଦୃଷ୍ଟିରୁ ବିଚାର କଲେ, ଓଡ଼ିଆମାନେ ଓଡ଼ିଶାର ଗଜପତି ରାଜାଙ୍କୁ ଓଡ଼ିଆ ରାଜା ବା ଓଡ଼ିଶାର ରାଜା ବୋଲି ସଗର୍ବେ କହିଥାନ୍ତି ତେଣୁ ଉତ୍କଳୀୟ ଜୟଦେବ ମଧ୍ୟ 'ଉତ୍କଳଭୂପତି' ବୋଲି ସମ୍ବୋଧନ କରିଥିବା ସ୍ୱାଭାବିକ । ଏଥିଲାଗି ତାଙ୍କୁ ଅଣ-ଓଡ଼ିଆ ବୋଲି ଯୁକ୍ତି କରିବା ନିରର୍ଥକ ଅଟେ । ବିଶେଷତଃ ପଦ୍ମାବତୀଚରଣ ଚାରଣ ଚକ୍ରବର୍ତ୍ତୀ ସଂଗୀତକାର ଜୟଦେବଙ୍କୁ ନାଟୁଆ ଭକ୍ତ କବି ବୋଲି ଜୟଦେବଙ୍କୁ ପଣ୍ଡିତ ସମାଜରେ ସ୍ଥାନ ଦେଇ ନଥିବାରୁ ହୁଏତ କବିଙ୍କ ସ୍ୱାଭିମାନ ପ୍ରତିବାଦ କରି ନିଜକୁ 'ପଣ୍ଡିତ କବି' ବୋଲି ଘୋଷଣା କରିଛି ଏବଂ ପୂର୍ବେ ଓ ପରେ ଆସିଥିବା ପଣ୍ଡିତମାନଙ୍କ ମୁଣ୍ଡରେ 'ପତ୍ର' ଅର୍ଥାତ୍ ପାଦତ୍ରାଣ ବା ଯୋତା ରଖି ଦେଇ ନିଜର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି ।

୬. ମୂର୍ତ୍ତିତତ୍ତ୍ୱର ଆଧାରରେ ମଧ୍ୟ ଗୀତଗୋବିନ୍ଦ ପ୍ରଭାବରେ ୧୩ଶ ଶତାବ୍ଦୀରୁ ଜଗନ୍ନାଥଙ୍କୁ କୃଷ୍ଣ କରାଯାଇ ଅନେକ ବିଗ୍ରହ ମିଳୁଥିବାରୁ ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର କହନ୍ତି- 'ଏଠାରେ ଦର୍ଶାଇ ଦିଆଯାଇପାରେ ଯେ ହିନ୍ଦୁ ମୂର୍ତ୍ତିତତ୍ତ୍ୱର ଏହି ବିକାଶ, ଯାହାକି ଜୟଦେବଙ୍କ ପରକାଳରେ ଜଗନ୍ନାଥଙ୍କୁ କୃଷ୍ଣରୂପରେ ସ୍ୱୀକାର କରିନେବାର ପରିଣତି, ତାହା ଓଡ଼ିଶାରେ ସ୍ପଷ୍ଟଭାବରେ ଦେଖିବାକୁ ମିଳେ । କିନ୍ତୁ ବଙ୍ଗଳା ଓ ବିହାରରେ ଏହା ମିଳୁ ନଥିବାରୁ ଜୟଦେବଙ୍କ ଉତ୍କଳୀୟତ୍ୱ ସ୍ପଷ୍ଟ ସୂଚିତ ହୁଏ * ।

ବିଶେଷତଃ ଗୀତଗୋବିନ୍ଦରେ ହୋଇଥିବା ରାଧାଙ୍କ ସହ ମାଧବଙ୍କ ଜୟଗାନ - ଉତ୍କଳୀୟ ସଂସ୍କୃତିର ଏକ ବଳିଷ୍ଠ ନିଦର୍ଶନ ।

୭. ଏହାବ୍ୟତୀତ ପ୍ରାମାଣିକ ପ୍ରାଚୀନ ଗ୍ରନ୍ଥର ସାହାଯ୍ୟରେ କୁହାଯାଏ ଯେ -

(କ) ମୈଥିଳ କବି ଚନ୍ଦ୍ରଦତ୍ତଙ୍କ 'ଭକ୍ତମାଳ' ଗ୍ରନ୍ଥରେ ଜୟଦେବଙ୍କୁ ଉତ୍କଳୀୟ ବୋଲି କୁହାଯାଇଛି । ସେଥିରେ ଅଛି -

---

* Shri K. N. Mahapatra - 'Introduction to Descriptive Catalogue of Sanskrit Manuscripts of Orissa' Vol. II, p. 53.

ଜଗନ୍ନାଥପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ ।
କେନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣସଙ୍କୁଳଃ ॥
ତତ୍ରୋତ୍କଳେ ଦ୍ୱିଜୋ ଜାତୋ ଜୟଦେବ ଇତି ଶ୍ରୁତଃ ।
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ ॥

(ଖ) ମହାରାଷ୍ଟ୍ରୀୟ କବି ମହୀପତିଙ୍କ 'ଭକ୍ତବିଜୟ' ଗ୍ରନ୍ଥରେ ଏବଂ ଆସାମର 'ସମ୍ପ୍ରଦାୟ କୁଳଦୀପକ' ଗ୍ରନ୍ଥରେ ଜୟଦେବ ଉତ୍କଳୀୟ ବୋଲି ଉଲ୍ଲେଖ ରହିଛି ।

(ଗ) ଶିଳାଲେଖ ପ୍ରମାଣମାନଙ୍କ ମଧ୍ୟରୁ ଲିଙ୍ଗରାଜ ମନ୍ଦିରର ତୃତୀୟ ପ୍ରବେଶ ଦ୍ୱାରରେ ଉତ୍କୀର୍ଣ୍ଣ ହୋଇଛି ଯେ, ଦକ୍ଷିଣ ଓଡ଼ିଶା (ବା କଳିଙ୍ଗ) ନିବାସୀ କୋମି ନାୟକଙ୍କ କନ୍ୟା ପରମା ଭକ୍ତିମତୀ ମେଡ଼ମା ଦେବୀ କୃତ୍ତିବାସ (ଶିବ)ଙ୍କ ସେବାରେ ମହାଦୀପ ଦାନ ନିମିତ୍ତ ଭୁବନେଶ୍ୱର ଯାଇଥିଲେ । ଏହି ପବିତ୍ର କାର୍ଯ୍ୟରେ କୂର୍ମପାଟକ ବା କୂର୍ମକ୍ଷେତ୍ର ବା ଶ୍ରୀକୂର୍ମ ଯାହାକି ସେତେବେଳେ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ଗୁରୁକ୍ଷେତ୍ରରୂପେ ପ୍ରତିଷ୍ଠା ଲାଭ କରିଥିଲା, ସେଠାରେ ସାଧୁପ୍ରଧାନ ଜୟଦେବ ତାଙ୍କର ଉପଦେଶକ ଓ ସହଯାତ୍ରୀ ହୋଇ ସାହାଯ୍ୟ କରିଥିଲେ, ୧୧୬୩ ଖ୍ରୀଷ୍ଟାବ୍ଦର ପ୍ରଥମ ପାଦରେ ।

ଜୟଦେବଙ୍କୁ କେନ୍ଦ୍ରକରି ଏସବୁ ଯୁକ୍ତିତର୍କ ଓ ବିବାଦ ଚାଲିଥିଲେ ମଧ୍ୟ ଏହା ସ୍ୱୀକାର୍ଯ୍ୟ ଯେ, ମହାକବି ଜୟଦେବ ଥିଲେ ଦେଶକାଳ ବିଚାର ନିର୍ବିଶେଷର କବି । ତାଙ୍କର ଅମର କୃତି ଗୀତଗୋବିନ୍ଦ – ଅଧ୍ୟାତ୍ମଭାବରେ ସମ୍ଭବ ହେଉ ବା ନ ହେଉ – ଆଦିରସର ଦୀପ୍ତ ପ୍ରକାଶ ପାଇଁ ଏଥିରେ ଯେଉଁ ଭାଷା, ଭାବ ଓ ଶୈଳୀ ବ୍ୟବହୃତ ଏବଂ ଯେଉଁ ଗୀତିମୟତା ଦ୍ୱାରା ଏହି ପୁଷ୍କଳ ଓ ପ୍ରାଣବନ୍ତ ତଥା ଯେଉଁ ରାଗରାଗିଣୀ ଦ୍ୱାରା ଏହା ପୁଷ୍ଟ ଓ ଋଦ୍ଧିମନ୍ତ – ସେହି ଦୃଷ୍ଟିରୁ ସାହିତ୍ୟ-ଜଗତରେ ଏହା ଏକ ଅମୂଲ୍ୟ, ଅନବଦ୍ୟ ଓ ବିଶ୍ୱବିଶ୍ରୁତ କାବ୍ୟରତ୍ନ * । ତେଣୁ ହିଁ ଏହାର ବହୁ ଅନୁବାଦ ଭାରତ ତଥା ପୃଥିବୀର ବିଭିନ୍ନ ଭାଷାରେ ପରିଦୃଷ୍ଟ ହୁଏ ** । ଏପରିକି ଗୀତଗୋବିନ୍ଦର

* ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ : 'ଗୀତଗୋବିନ୍ଦ – ଏକ ସାମଗ୍ରିକ ମୂଲ୍ୟାୟନ' ନବଜୀବନ ୧୫ଶ ବର୍ଷ ୭ମ ସଂଖ୍ୟା, ପୃଷ୍ଠା ୪୫୬ ।

** National Library, Calcutta ରେ ଥିବା ଗୀତଗୋବିନ୍ଦର ବିଭିନ୍ନ ସଂସ୍କରଣର ଏକ ତାଲିକା ପରିଶିଷ୍ଟ (Appendix)ରେ ଦିଆଯାଇଛି ।

ତାଳପତ୍ର ଓ କାଗଜ ପ୍ରତି ଲଣ୍ଡନରେ ମଧ୍ୟ ସଂରକ୍ଷିତ ହୋଇଛି । ଅକ୍ସଫୋର୍ଡ଼ର ବଡ଼୍ଲିନ୍ ଲାଇବ୍ରେରୀ (Bodleian Library)ରେ ଥିବା ୧୭୯୪ର ଗୋଟିଏ ଗୀତଗୋବିନ୍ଦ କାଗଜ ପ୍ରତିରେ 'ଉତ୍କଳୀୟେନ ଜୟଦେବେନ' ବୋଲି ଉଲ୍ଲେଖ ରହିଥିବା ଅଧ୍ୟାପିକା ଡକ୍ଟର ସାବିତ୍ରୀ ରାଉତଙ୍କ ଠାରୁ ଜଣାଯାଏ । *

## ଗ୍ରନ୍ଥର ନାମକରଣ :

ବଜରି ଦାସଙ୍କ 'ଅର୍ଥଗୋବିନ୍ଦ' ମହାକବି ଜୟଦେବକୃତ ଗୀତଗୋବିନ୍ଦର ଏକ ନୂତନ ଅନୁବାଦ । ନାମକରଣରୁ ବଳରାମ ଦାସଙ୍କ 'ଅର୍ଥ କୋଇଲି' ଯେଉଁପରି ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି'ର ଏକ ଅଧ୍ୟାତ୍ମ ବ୍ୟାଖ୍ୟା, ସେହିପରି ଅର୍ଥଗୋବିନ୍ଦ ନାମରୁ ଏହା ଗୀତଗୋବିନ୍ଦର ଏକ ଅଧ୍ୟାତ୍ମ ବ୍ୟାଖ୍ୟା ବୋଲି ଅନେକେ ଅନୁମାନ କରିଥାନ୍ତି । କିନ୍ତୁ ଯେଉଁପରି ଗୀତପ୍ରଧାନ ଗୋବିନ୍ଦଚରିତସମ୍ବଳିତ କାବ୍ୟ ଗୀତଗୋବିନ୍ଦ ନାମରେ ନାମିତ ହେଲା, ସେହିପରି ଅର୍ଥ-ପ୍ରଧାନ ଗୋବିନ୍ଦ ଚରିତ ଏଠାରେ ଅର୍ଥଗୋବିନ୍ଦ ନାମରେ ଅଭିହିତ ହୋଇଛି । ସଂସ୍କୃତରେ 'ଗୀୟତେ ସ୍ତୂୟତେ ଗୋବିନ୍ଦଃ ଯସ୍ମିନ୍ (ତତ୍ 'ଗୀତଗୋବିନ୍ଦମ୍) ପରି 'ଅର୍ଥ୍ୟତେ ପ୍ରାର୍ଥ୍ୟତେ ଗୋବିନ୍ଦଃ ଯସ୍ମିନ୍ ବା ଯେନ (ତତ୍ 'ଅର୍ଥଗୋବିନ୍ଦମ୍) ସିଦ୍ଧ କରାଯାଇ ପାରେ । ମାତ୍ର ନାମରୁ ସ୍ପଷ୍ଟପ୍ରତୀତ ହେଉଛି ଯେ କବି ଗୀତଗୋବିନ୍ଦର ସାଙ୍ଗୀତିକତାକୁ ଛାଡ଼ି ତାର ଅର୍ଥବୋଧ ପ୍ରତି ହିଁ ବିଶେଷ ଦୃଷ୍ଟି ଦେଇଛନ୍ତି । କବି ସ୍ୱୟଂ ତାଙ୍କ କୃତିର ବହୁସ୍ଥାନରେ ଏହା ସ୍ୱୀକାର ମଧ୍ୟ କରିଛନ୍ତି -

ଶ୍ରୀଗୀତଗୋବିନ୍ଦର ଅର୍ଥ । ଛନ୍ଦିବି ଅଧ୍ୟାମତେ ଗୀତ ।। (୧/୧୨୨)
ଗୀତଗୋବିନ୍ଦ ଅର୍ଥମାନ । ମୋ ହୃଦେ ହୋଇବ ପ୍ରସନ୍ନ ।।
ଅର୍ଥଗୋ଼ବିନ୍ଦ ନାମେ ଗ୍ରନ୍ଥ । ଅଧ୍ୟା ମୁଁ କରିବି ଉକତ ।। (୨/୩୩,୩୪)
ଗୀତଗୋବିନ୍ଦ ଅର୍ଥ ଯେଣୁ । ଅର୍ଥଗୋବିନ୍ଦ ହେଲା ତେଣୁ ।। (୨/୬୨; ୨୬/୯୨)
ସୁଜନ ଜନଙ୍କ ନିମନ୍ତେ । ବଖାଣ କଲି ଅର୍ଥମତେ ।। (୨/୬୪)
ଶ୍ରୀଗୀତଗୋବିନ୍ଦର ଅର୍ଥ । ଅର୍ଥଗୋବିନ୍ଦ ସୁଖ ପଥ ।। (୫/୮୩)

---

* Vide Catalogue of Sans. Mss. in the Bodleian Library. Appendix to Vol. I, by A.B. Keith, printed at Oxford Clarendon Press in 1909.

ଗୀତଗୋବିନ୍ଦ ଅର୍ଥମାନ । ଅର୍ଥଗୋବିନ୍ଦ ଏ ଲିଖନ ॥

(୮/୭୪; ୧୨/୪୭; ୧୯/୭୧; ୨୪/୮୨)

ଯେ ଜୟଦେବର କାହାଣୀ । ଗୀତଗୋବିନ୍ଦ ଅର୍ଥବାଣୀ ॥

ଅର୍ଥଗୋବିନ୍ଦ ଏ ପ୍ରକାଶ । ବୋଲେ ବଜରି ମୂଢ଼ ଦାସ ॥ (୧୦/୭୭,୭୮)

ଏଥି ଉତ୍ତାରେ ଦିବ୍ୟ ରସ । ସେ ଅର୍ଥଗୋବିନ୍ଦ ପ୍ରକାଶ ॥

ଗୀତଗୋବିନ୍ଦ ଅର୍ଥମାନେ । ସୁଜନେ ଶୁଣ ଏକମନେ ॥ (୧୫/୧,୨)

ସୁଜନେ ଶୁଣ ଏକ ଚିତ୍ତେ । ଯେ ଗୀତଗୋବିନ୍ଦର ଅର୍ଥେ । (୧୬/୧)

ହରି ଚରିତ ଏ ଲେଖନ । ଗୀତଗୋବିନ୍ଦ ଅର୍ଥମାନ ॥ (୨୦/୪୦)

ଗୀତଗୋବିନ୍ଦ ଅର୍ଥମାନ । ଧ୍ରୁବ ବଚନ ଏ ଲେଖନ ॥ (୨୩/୧)

ଶ୍ରୀଗୀତଗୋବିନ୍ଦର ଅର୍ଥ । ଅର୍ଥଗୋବିନ୍ଦ ସୁଖ ପଥ ॥ (୨୫/୧୨୭)

ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ପାଠକମାନଙ୍କଠାରେ ଗୀତଗୋବିନ୍ଦର ଅର୍ଥବୋଧ କରାଇବା କବିଙ୍କର ଲକ୍ଷ୍ୟ ଥିଲା । ତେଣୁ ସେ ଛନ୍ଦୋବନ୍ଧରେ କୌଣସି ଅର୍ଥବୈଚିତ୍ର୍ୟ ସୃଷ୍ଟି ନ କରି ପ୍ରସିଦ୍ଧ ଓ ପ୍ରଚଳିତ ଭାଗବତ ବୃତ୍ତରେ ସରଳ ଭାଷାରେ ୨୭ ଅଧ୍ୟାୟରେ ଅର୍ଥଗୋବିନ୍ଦ ରଚନା କରିଯାଇଛନ୍ତି । ପ୍ରସିଦ୍ଧ ଓ ସୁପ୍ରଚଳିତ ଧରଣୀଧରଙ୍କ ଓଡ଼ିଆ ଅନୁବାଦଠାରୁ ଏହା ସାବଲୀଳ ନ ହେଲେ ହେଁ ସରଳ ଏବଂ ସୁବୋଧ । କବି ବଜରି ଦାସ ଅର୍ଥ ବ୍ୟାଖ୍ୟା ବେଳେ ପ୍ରସଙ୍ଗୋଦ୍ଧାରପୂର୍ବକ ବ୍ୟାଖ୍ୟାକୁ ସାଧାରଣଙ୍କ ବୋଧଗମ୍ୟ କରିବା ପାଇଁ ଆବଶ୍ୟକସ୍ଥଳେ ବିସ୍ତୃତ ମଧ୍ୟ କରିଛନ୍ତି । ତାଙ୍କର ଏହି ଅନୁବାଦକୁ ଅକ୍ଷରାନୁବାଦ ନ କହି ମୁକ୍ତାନୁବାଦ କୁହାଯାଇପାରେ । ଗୀତଗୋବିନ୍ଦ ପରି ସର୍ଗାନୁକ୍ରମରେ ବିଭକ୍ତ ନ ହୋଇ, ଧରଣୀଧରଙ୍କ ଅନୁବାଦ ଯେପରି ପୂର୍ଣ୍ଣଚନ୍ଦ୍ର କଳାକୁ ନେଇ ଷୋଡ଼ଶ ଛାନ୍ଦରେ ବିଭକ୍ତ, ବଜରି ଦାସଙ୍କ ଅନୁବାଦ ସେପରି ୨୭ ଅଧ୍ୟାୟରେ ବିଭକ୍ତ ହୋଇଛି ।

ତେଣୁ କବି କହିଛନ୍ତି -

ଶ୍ରୀଗୀତଗୋବିନ୍ଦର ଅର୍ଥ । ଛନ୍ଦିବି ଅଧ୍ୟାମତେ ଗୀତ ॥

ଚୌବିଶଗାଥା-ଗୀତମତେ । ବାସ୍ତରି ଶୋଳକ ସହିତେ ॥

ଲେଖନ କରିବି ଗୋସାଇଁ । ଅର୍ଥଗୋବିନ୍ଦ ନାମେ ମୁହିଁ ॥ (୧/୧୨୨, ୧୨୪)

## ଗୀତଗୋବିନ୍ଦର ଶ୍ଳୋକ ସଂଖ୍ୟା ଓ ପାଠ ନିର୍ଣ୍ଣୟ * :

ଅର୍ଥଗୋବିନ୍ଦର ଉପର୍ଯ୍ୟୁକ୍ତ ପଙ୍‌କ୍ତିଦ୍ୱୟରୁ ଜଣାଯାଏ, ଯେ ଗୀତଗୋବିନ୍ଦରେ ମୋଟ ୨୪ ଗୋଟି ଗାଥା ଓ ୭୨ଟି ଶ୍ଳୋକ ଅଛି । ଅର୍ଥଗୋବିନ୍ଦର ଏହି ଉକ୍ତିରୁ ଗୀତଗୋବିନ୍ଦର ଯଥାର୍ଥ ପାଠ ସମ୍ବନ୍ଧରେ ଯେଉଁ ସୂଚନା ମିଳେ, ତାହାରି ସୂତ୍ରରେ ଅର୍ଥଗୋବିନ୍ଦର ଅନୁଶୀଳନ କଲେ ଗୀତଗୋବିନ୍ଦର ପ୍ରକୃତ ପାଠୋଦ୍ଧାର କରି ହୁଏ । ଗୀତଗୋବିନ୍ଦ ମୂଳତଃ ଗୀତପ୍ରଧାନ ହେଲେ ହେଁ ଏଥିରେ ଗୀତମାନଙ୍କର ଭାବ ସଂଯୋଜକ ରୂପେ ଅନେକ ଶ୍ଳୋକ ସ୍ଥାନ ପାଇଛି । ଗୀତସଂଖ୍ୟା ମୋଟ ୨୪ - ଏହା ସର୍ବସମ୍ମତ ହେଲେ ହେଁ ଶ୍ଳୋକମାନଙ୍କର ସଂଖ୍ୟା ନେଇ ମତାନୈକ୍ୟ ସୃଷ୍ଟି ହୋଇଥାଏ । ଭୁବନେଶ୍ୱରର ୰ପଣ୍ଡିତ ତ୍ରିଲୋଚନ ଦାଶଙ୍କଠାରୁ ସଂଗୃହୀତ ଏକ ତାଳପତ୍ର ଗୀତଗୋବିନ୍ଦରେ କେବଳ ଗୀତଗୋବିନ୍ଦର ଶ୍ଳୋକଗୁଡ଼ିକ ସ୍ଥାନ ପାଇଛି ଏବଂ ଯଦିଓ ଗୀତଗୁଡ଼ିକୁ ବାଦ୍ ଦିଆଯାଇଛି ତଥାପି ପୋଥିଟିର ନାମ ଗୀତଗୋବିନ୍ଦ ରହିଛି । ଏଥିରୁ ପ୍ରତୀତ ହେଉଛି, ଗୀତଗୋବିନ୍ଦର ଶ୍ଳୋକସଂଖ୍ୟା ପ୍ରଦର୍ଶନ ହିଁ ଉକ୍ତ ପୋଥିର ଲକ୍ଷ୍ୟ । ସେଥିରେ ଗୀତଗୋବିନ୍ଦର ଶ୍ଳୋକଗୁଡ଼ିକ ଦେବା ପରେ ଏବଂ 'ସମାପ୍ତଶ୍ଚାୟଂ ଗ୍ରନ୍ଥଃ' ଉଲ୍ଲେଖ ପରେ ଶ୍ଳୋକସଂଖ୍ୟା ନିମ୍ନପ୍ରକାରେ କେତୋଟି ଶ୍ଳୋକରେ ନିବଦ୍ଧ ହୋଇଛି । ଉକ୍ତ ଶ୍ଳୋକଗୁଡ଼ିକ ହେଉଛି-

ପ୍ରଥମେ ଦ୍ୱାଦଶ ଶ୍ଳୋକାଃ, ଦ୍ୱିତୀୟେ ପଞ୍ଚକଂ ତଥା ।
ତୃତୀୟେ ଚାଷ୍ଟକଂ ଜ୍ଞେୟଂ, ଚତୁର୍ଥେ ପଞ୍ଚକଂ ଭବେତ୍ ॥
ପଞ୍ଚମେ ସପ୍ତକଂ ତତ୍ର ଷଷ୍ଠେ ଶ୍ଳୋକତ୍ରୟଂ ପୁନଃ ।
ସପ୍ତମେ ଶ୍ଳୋକନବକ-ମଷ୍ଟମେ ଦ୍ୱୌ ନବେ ଦ୍ୱିକମ୍ ॥
ଦଶମେ ଷଟ୍ ନବଂ ଚୈକାଦଶେ ଦ୍ୱାଦଶେ ତ୍ୱଷ୍ଟକମ୍ ।
ଇତି ଷଟ୍‌ସପ୍ତତିଶ୍ଳୋକୈର୍ଗୀତଗୋବିନ୍ଦମୁଚ୍ୟତେ ॥

ଉକ୍ତ ପୋଥିରେ ପ୍ରଦତ୍ତ ଶ୍ଳୋକାବଳୀ ଗୀତଗୋବିନ୍ଦର ପାଠ ନିର୍ଣ୍ଣୟରେ ସହାୟକ ହେବ ବୋଲି ନିମ୍ନରେ କ୍ରମଶଃ ଉଦ୍ଧାର କରାଯାଇ ଅର୍ଥଗୋବିନ୍ଦ ଓ ଅନ୍ୟାନ୍ୟ ସହ ଏକ ତୁଳନା କରାଗଲା ।

---

* ଓଡ଼ିଶା ସାହିତ୍ୟ ଏକାଡେମୀର ତ୍ରୈମାସିକ କୋଣାର୍କ ପତ୍ରିକା ୫୩ ବର୍ଷ ୧୩ ସଂଖ୍ୟାରେ ପ୍ରକାଶିତ ଏହି ଗ୍ରନ୍ଥ ସଂପାଦକଙ୍କ ଲିଖିତ 'ବଜରିଦାସଙ୍କ ଅର୍ଥଗୋବିନ୍ଦ : ଗୀତଗୋବିନ୍ଦର ପାଠ ନିର୍ଦ୍ଧାରଣ ଓ ଶ୍ଳୋକସଂଖ୍ୟା' ଶୀର୍ଷକ ପ୍ରବନ୍ଧ ଏଠାରେ ପରିବର୍ତ୍ତିତ ଓ ପରିମାର୍ଜିତ ଭାବରେ ଦିଆଯାଇଛି ।

## ପୋଥିରେ ଗୃହୀତ ଶ୍ଳୋକ ... ଅର୍ଥଗୋବିନ୍ଦର ଶ୍ଳୋକ ସଂଖ୍ୟା

### ପ୍ରଥମ ସର୍ଗ -

୧. ମେଘୈର୍ମେଦୁର. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧)
୨. ବାଗ୍‌ଦେବତା. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩)
୩. ଯଦି ହରିସ୍ମରଣେ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୪)
୪. ବାଚଃ ପଲ୍ଲବୟ୍ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨)
୫. ବେଦାନୁଦ୍ଧରତେ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୫)
୬. ପଦ୍ମାପୟୋଧର. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬)
୭. ବସନ୍ତେ ବାସନ୍ତୀ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୭)
୮. ଦରବିଦଳିତମଲ୍ଲୀ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୮)
୯. ଉନ୍ମୀଳନ୍ମଧୁ. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୯)
୧୦. ଅନେକନାରୀ. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୦)
୧୧. ବିଶ୍ୱେଷାମନୁ. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୧)
୧୨. ଅଦ୍ୟୋହଙ୍ଗ. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୨)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜ ଶ୍ରୀଜୟଦେବକୃତୌ ସାମୋଦଦାମୋଦରୋ ନାମ ପ୍ରଥମଃ ସର୍ଗଃ ।

### ଦ୍ୱିତୀୟ ସର୍ଗ -

୧. ବିହରତି ବନେ ରାଧା ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୩)
୨. ଗଣୟତି ଗୁଣଗ୍ରାମଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୪)
୩. ହସ୍ତସ୍ରସ୍ତବିଳାସ. ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୫)
୪. ଦୁରାଲୋକଃ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୬)
୫. ସାକୂତସ୍ମିତ. ... ସଂସ୍କୃତ ସର୍ବାଙ୍ଗସୁନ୍ଦରୀ ଟୀକା ତଥା ଧରଣୀଧର ଓ ବଜରିଙ୍କ ଅନୁବାଦରେ ନାହିଁ ।

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜ ଶ୍ରୀଜୟଦେବକୃତୌ ସ୍ନିଗ୍ଧମାଧବୋ ନାମ ଦ୍ୱିତୀୟଃ ସର୍ଗଃ ।

## ତୃତୀୟ ସର୍ଗ -

୧. କଂସାରିରପି ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୭)
୨. ଇତସ୍ତତସ୍ତାମନୁ ...(ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୮)
୩. ହୃଦି ବିସଲତା ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୧୯)
୪. ପାଣୌ ମା କୁରୁ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୦)
୫. ଭ୍ରୂଚାପେ ନିହିତଃ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୧)
୬. ତାନି ସ୍ପର୍ଶସୁଖାନି ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୨)
୭. ଭ୍ରୂପଲ୍ଲବଂ ଧନୁ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୩)
୮. କୀୟକ୍ଷ୍ଣବିଲୋଳଲୋଳ୍ ... ସଂସ୍କୃତ ସର୍ବାଙ୍ଗ ସୁନ୍ଦରୀ ଟୀକାରେ ତଥା ଧରଣୀଧର ଓ ବଜରିଙ୍କ ଅନୁବାଦରେ ନାହିଁ ।

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜ ଶ୍ରୀଜୟଦେବକୃତୌ ମୁଗ୍ଧମଧୁସୂଦନୋ ନାମ ତୃତୀୟଃ ସର୍ଗଃ ।

## ଚତୁର୍ଥ ସର୍ଗ -

୧. ଯମୁନାତୀରବାନୀର ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୪)
୨. ଆବାସୋ ବିପିନାୟତେ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୫)
୩. ସ୍ମରାତୁରାଂ ଦୈବତ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୬)
୪. କନ୍ଦର୍ପଜ୍ୱର ସଂଜ୍ୱରା ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୭)
୫. କ୍ଷଣମପି ବିରହଃ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୨୮)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜ ଶ୍ରୀଜୟଦେବକୃତୌ ସ୍ନିଗ୍ଧମାଧବୋ ନାମ ଚତୁର୍ଥଃ ସର୍ଗଃ ।

**ପଞ୍ଚମ ସର୍ଗ -**

୧. ଅହମିହ ନିବସାମି ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା୨୯)
୨. ପୂର୍ବଂ ଯତ୍ର ସମ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୦)
୩. ବିକିରତି ମୁହୁଃ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା୩୧)
୪. ତ୍ୱଦ୍ୱାଙ୍କେ(ମ୍ୟେ)ଣ(ନ)ସମ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୨)
୫. ଆଶ୍ଳେଷାଦନୁ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୩)
୬. ସଭୟଚକିତ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୪)
୭. ରାଧାମୁଗ୍ଧେ ... ସଂସ୍କୃତ ସର୍ବାଙ୍ଗସୁନ୍ଦରୀ ଟୀକାରେ ତଥା ଧରଣୀଧର ଓ ବଳରିଙ୍କ ଅନୁବାଦରେ ନାହିଁ ।

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜ ଶ୍ରୀଜୟଦେବକୃତୌ ଅଭିସାରିକାବର୍ଣ୍ଣନେ ସାକାଂକ୍ଷପୁଣ୍ଡରୀକାକ୍ଷୋ ନାମ ପଞ୍ଚମ ସର୍ଗଃ ।

**ଷଷ୍ଠ ସର୍ଗ -**

୧. ଅଥ ତାଂ ଗନ୍ତୁମଶକ୍ତାଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୫)
୨. ବିପୁଳପୁଲକପାଳୀ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୬)
୩. ଅଙ୍ଗେଷ୍ୱାଭରଣଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୭)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ବାସକସଜ୍ଜାବର୍ଣ୍ଣନେ ଧୋହୃଷ୍ଟବୈକୁଣ୍ଠୋ ନାମ ଷଷ୍ଠଃ ସର୍ଗଃ ।

**ସପ୍ତମ ସର୍ଗ -**

୧. ଅତ୍ରାନ୍ତରେ ଚ କୁଳଟା ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୮)
୨. ପ୍ରସରତି ଶଶଧର ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୩୯)
୩. ତତ୍କିଂ କାମପି ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୪୦)
୪. ଅଥାଗତାଂ ମାଧବ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୪୧)
୫. ବିରହପାଣ୍ଡୁମୁରାରିମୁଖାମ୍ବୁଜ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୪୨)

୬. ନାସ୍ୱାତଃ ସଖି ନିର୍ଦ୍ଦୟୋ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୩)
୭. ମନୋଭବାନନ୍ଦନ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୪)
୮. ରିପୁରିବ ସଖୀ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୫)
୯. ବାଧାଂ ବିଧେହି ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୬)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ବିପ୍ରଲବ୍ଧାବର୍ଣ୍ଣନେ ନାଗରନାରାୟଣୋ ନାମ ସପ୍ତମଃ ସର୍ଗଃ ।

**ଅଷ୍ଟମ ସର୍ଗ -**

୧. ଅଥ କଥମପି ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୭)
୨. ତବେଦଂ ପଶ୍ୟନ୍ତ୍ୟା ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୮)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ଖଣ୍ଡିତାବର୍ଣ୍ଣନେ ବିଲକ୍ଷଲକ୍ଷ୍ମୀପତିର୍ନାମାଷ୍ଟମଃ ସର୍ଗଃ ।

**ନବମ ସର୍ଗ -**

୧. ତାମଥମନ୍ମଥଖିନ୍ନାଂ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୪୯)
୨. ସ୍ନିଗ୍ଧେ ଯତ୍ପରୁଷାସି ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୦)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କଳହାନ୍ତରିତାବର୍ଣ୍ଣନେ ମନ୍ଦମୁକୁନ୍ଦୋ ନାମ ନବମଃ ସର୍ଗଃ ।

**ଦଶମ ସର୍ଗ -**

୧. ଅତ୍ରାନ୍ତରେ ମସୃଣରୋଷ. ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୧)
୨. ପରିହର କୃତାତଙ୍କେ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୨)
୩. ମୁଗ୍ଧେ ବିଧେହି ମୟି ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୩)
୪. ବ୍ୟଥୟତି ବୃଥା ମୌନଂ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୪)
୫. ବନ୍ଧୂକଦ୍ୟୁତିବାନ୍ଧବୋ. ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୫)
୬. ଦୃଶୌ ତବ ମଦାଲସେ ... (ଅର୍ଥଗୋବିନ୍ଦ ଶ୍ଲୋକସଂଖ୍ୟା ୫୬)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ମାନିନୀବର୍ଣ୍ଣନେ ଚତୁରଚତୁର୍ଭୁଜୋ ନାମ ଦଶମଃ ସର୍ଗଃ ।

## ଏକାଦଶ ସର୍ଗ -

୧. ସୁଚିରମନୁନୟେନ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୫୭)
୨. ସା ମାଂ ଦ୍ରକ୍ଷ୍ୟତି ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୫୮)
୩. ଅକ୍ଷ୍ଣୋର୍ନିକ୍ଷିପଦଞ୍ଜନଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୫୯)
୪. କାଶ୍ମୀର ଗୌରବପୁଷା ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୦)
୫. ହାରାବଳୀଁତରଳ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୧)
୬. ତ୍ୱାଂ ଚିତ୍ତେନ ଚିରଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୨)
୭. ସା ସସାଧ୍ୱସମାନନ୍ଦେ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୩)
୮. ଅତିକ୍ରମ୍ୟାପାଙ୍ଗଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୪)
୯. ଭଜନ୍ତ୍ୟାସ୍ତଳ୍ପାନ୍ତଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୫)

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ସାନନ୍ଦଗୋବିନ୍ଦୋ ନାମ ଏକାଦଶଃ ସର୍ଗଃ ।

## ଦ୍ୱାଦଶ ସର୍ଗ -

୧. ଗତବତି ସଖୀବୃନ୍ଦେ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୬)
୨. ପ୍ରତ୍ୟୂହଃ ପୁଲକାଙ୍କୁରେଣ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୭)
୩. ଦୋର୍ଭ୍ୟାଂ ସଂଯମିତଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୮)
୪. ମାରାଙ୍କେ (ଆରବ୍ଧେ)
ରତିକେଳିସଙ୍କୁଳ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୬୯)
୫. ତସ୍ୟାଃ ପାଟଳପାଣିଜାଙ୍କିତଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୭୦)
୬. ରଚୟ କୁଚୟୋଃ ପତ୍ରଂ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୭୧)
୭. ଯଦ୍‌ଗାନ୍ଧର୍ବକଳାସୁ ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୭୨)
୮. ସାଧ୍ୱୀ ମାଧ୍ୱୀକ ଚିନ୍ତା ... (ଅର୍ଥଗୋବିନ୍ଦ ଶ୍ଳୋକସଂଖ୍ୟା ୭୩)

- (ଧରଣୀଧର ଏହାର ଅନୁବାଦ କରିନାହାନ୍ତି) ।

ଇତି କବିରାଜ ଶ୍ରୀଜୟଦେବକୃତୌ ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ସ୍ୱାଧୀନଭର୍ତ୍ତୃକାବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶଃ ସର୍ଗଃ ।

ସମାପ୍ତଶ୍ଚାୟଂ ଗ୍ରନ୍ଥଃ

ଗୀତଗୋବିନ୍ଦର ପ୍ରକାଶିତ ବହୁ ସଂସ୍କରଣରେ ସାଧାରଣତଃ ଶ୍ଳୋକସଂଖ୍ୟାର ବୈଭିନ୍ନ୍ୟ ପରିଲକ୍ଷିତ ହୋଇଥାଏ । ପୂର୍ବ-ପଶ୍ଚିମ-ଉତ୍ତର-ଦକ୍ଷିଣ ପାଠ ମିଳାଇ ଦେଖିଲେ; ପରବର୍ତ୍ତୀ ବୈଷ୍ଣବ ଟୀକାକାରଗଣ ବହୁ ପ୍ରକ୍ଷିପ୍ତ ଅଂଶକୁ ମିଶାଇ ଟୀକା କରିଯାଇଛନ୍ତି ଏବଂ ପ୍ରାୟଶଃ ଏ ସମସ୍ତ ସଂସ୍କରଣ ବହୁ ଶ୍ଳୋକର ସାମାନ୍ୟ କ୍ରମପରିବର୍ତ୍ତନ ସହ ଓ ବିଶେଷ ପାଠାନ୍ତର ସହ ମେଳଖାଉଛି । କିନ୍ତୁ ଭୁବନେଶ୍ୱରର ସ୍ୱର୍ଗତ ପଣ୍ଡିତ ତ୍ରିଲୋଚନ ଦାଶଙ୍କଠାରୁ ସଂଗୃହୀତ ତାଳପତ୍ର ପୋଥିରେ ଗୀତଗୋବିନ୍ଦର ମୋଟ ଶ୍ଳୋକସଂଖ୍ୟା ୭୬ ବୋଲି ଉଲ୍ଲେଖ ଥିଲାବେଳେ ଅର୍ଥଗୋବିନ୍ଦରେ ମୋଟ ଶ୍ଳୋକସଂଖ୍ୟା ୭୨ ବୋଲି ଉଲ୍ଲେଖ ରହିଛି । କବି ସ୍ୱ ଅର୍ଥଗୋବିନ୍ଦର ୨୭ଶ ଅଧ୍ୟାୟରେ ପୁଣି ଗୀତଗୋବିନ୍ଦର ପାଠବିଷୟ ଉଲ୍ଲେଖ କରି କହିଛନ୍ତି -

ଗୀତମ୍ -

ଚଉବିଂଶ ଗାଥା ବାସ୍ତରିଶ୍ଳୋକଂ
ଦ୍ୱାଦଶ ସର୍ଗ ମୁକ୍ତିଗତି ଲୋକଂ ।
ସକଳଶାସ୍ତ୍ର ଏହୁ ବେଦ ପୁରାଣା
ସର୍ବସଙ୍ଗୀତା ଗୀତଗୋବିନ୍ଦନାମା ।

ଅର୍ଥ -

ଚଉବିଂଶ ଗାଥା ଗୀତମତେ
ବାଅସ୍ତରି ଶ୍ଳୋକ ସହିତେ ।
ଦ୍ୱାଦଶ ସର୍ଗ ଏହୁ ଭାବ
କାବ୍ୟ ଉପରେ ମହାକାବ୍ୟ ।
ସକଳ ଶାସ୍ତ୍ର ପରେ ସାର
ବ୍ରହ୍ମଜ୍ଞାନକୁ ଏ ବିଚାର ।
ସର୍ବ ଶଂସିତ ଗୀତ ଯେଟି
ଗୀତଗୋବିନ୍ଦ ନାମ ସେଟି ।

(ଅ. ଗୋ. ପୃଷ୍ଠା ୧୪୩)

କିନ୍ତୁ ଅର୍ଥଗୋବିନ୍ଦରେ ମୋଟ ୭୩ଟି ଶ୍ଳୋକଥିବା ଦେଖାଯାଉଛି । ୭୪ ସଂଖ୍ୟକ ଶ୍ଳୋକଟିର ଓଡ଼ିଆମିଶା ରଚନାରୁ ତାହା ବଜରି ଦାସଙ୍କ ସ୍ୱକୃତ ଶ୍ଳୋକ ବୋଲି ସ୍ପଷ୍ଟ ପ୍ରତିପନ୍ନ ହେଉଛି । ପ୍ରୋକ୍ତ ତାଳପତ୍ର ପୋଥିଟିରେ ଥିବା ୭୬ଟି ଶ୍ଳୋକ ମଧ୍ୟରୁ ଦ୍ୱିତୀୟ ସର୍ଗର 'ସାକୂତସ୍ମିତ ......', ତୃତୀୟ ସର୍ଗର 'ତିର୍ଯ୍ୟକ୍‌କଣ୍ଠ .......', ପଞ୍ଚମ ସର୍ଗର 'ରାଧାମୁଗ୍ଧମୁଖାରବିନ୍ଦ ...'– ଏହିପରି ତିନୋଟି ଶ୍ଳୋକକୁ ଅର୍ଥଗୋବିନ୍ଦରେ କବି ବଜରିଦାସ ଗ୍ରହଣ କରିନାହାନ୍ତି । ବିଷୟଗତ ପ୍ରାଧାନ୍ୟଦୃଷ୍ଟିରୁ ବିଚାରକଲେ, ଏହି ତିନୋଟି ମଙ୍ଗଳାଚରଣ ଶ୍ଳୋକ ହେତୁ ଏହାର ଅନୁପସ୍ଥିତି କାବ୍ୟ ବିଷୟର ପ୍ରତିବନ୍ଧକ ହେଉ ନଥିବାରୁ, ଅପ୍ରଧାନ ଏବଂ ଗୌଣ ବୋଲି ମନେହୁଏ । ତାଳପତ୍ର ପୋଥି ଅନୁଯାୟୀ ପ୍ରତି ସର୍ଗ ଶେଷରେ ମଙ୍ଗଳାଚରଣ ଶ୍ଳୋକ ନଥିବା ସ୍ଥଳେ କେବଳ ଦ୍ୱିତୀୟ, ତୃତୀୟ ଓ ପଞ୍ଚମ ସର୍ଗ ଶେଷରେ ମଙ୍ଗଳାଚରଣ ଶ୍ଳୋକର ଆବଶ୍ୟକତା କିଛି ନାହିଁ । ଗୀତଗୋବିନ୍ଦର ରସପୂର୍ଣ୍ଣ ଶୃଙ୍ଗାର ଚିତ୍ରଣକୁ ପରବର୍ତ୍ତୀ କାଳରେ କାବ୍ୟ ଦୃଷ୍ଟିରୁ ବିଚାର ନ କରି ଯେଉଁମାନେ ଧର୍ମଦୃଷ୍ଟିରୁ ବିଚାର କଲେ ଓ ଏଥିରେ ଅଧ୍ୟାତ୍ମଲୀଳାର ଆରୋପ କଲେ ସେମାନେ ହୁଏତ ଗୀତଗୋବିନ୍ଦର ପ୍ରାଧାନ୍ୟ ପ୍ରତିପାଦନ କରିବା ନିମିତ୍ତ ତଥା ଏହାର ପ୍ରଚାର ଓ ପ୍ରସାର ଧର୍ମଭାବରେ କରାଇବା ପାଇଁ 'ଆଦୌ ମଧ୍ୟେ ଚ ଅନ୍ତେ ଚ ହରିଃ ସର୍ବତ୍ର ଗୀୟତେ' ଉକ୍ତି ଅନୁସରଣରେ ସର୍ଗମାନଙ୍କ ଶେଷରେ ମଙ୍ଗଳାଚରଣ ଶ୍ଳୋକର ଅବତାରଣା କରିଛନ୍ତି । ଅନେକ ଗୀତଗୋବିନ୍ଦରେ ପ୍ରତି ସର୍ଗ ଶେଷରେ ଏକ ବା ଏକାଧିକ ମଙ୍ଗଳାଚରଣ ଶ୍ଳୋକ ପରିଦୃଷ୍ଟ ହୋଇଥାଏ । କିନ୍ତୁ ଏହି ମଙ୍ଗଳାଚରଣଗୁଡ଼ିକ ପରବର୍ତ୍ତୀ ଓ ପ୍ରକ୍ଷିପ୍ତ । ହୁଏତ ଗୀତଗୋବିନ୍ଦ ଓ ଅଭିନବ ଗୀତଗୋବିନ୍ଦର ଶ୍ରେଷ୍ଠତା ନେଇ ପ୍ରଚଳିତ ଆଖ୍ୟାୟିକାର ଆଶ୍ରୟରେ ଏପରି ବାର ଶ୍ଳୋକର ଅନ୍ତର୍ଭୁକ୍ତି ହୋଇଛି । ରାମଦାସଙ୍କ ଦାର୍ଢ୍ୟତାଭକ୍ତିରେ ପୁରୁଷୋତ୍ତମଦେବଙ୍କ ଅଭିନବ ଗୀତଗୋବିନ୍ଦ ବିଷୟରେ ଭଗବଦ୍‌ବାଣୀ ନିମ୍ନଲିଖିତ ପ୍ରକାରେ ରହିଛି –

ଦ୍ୱାଦଶ ସର୍ଗ ପରିମାଣ, ଜୟଦେବର ଗ୍ରନ୍ଥ ଜାଣ ।
ବାର ସର୍ଗର ଆଦ୍ୟେ ତାର, ରହିବ ବାର ଶ୍ଳୋକ ତୋର ।
ରାଜା ହୋଇଣ ଏଥେଁ ତୋଷ, ଗମିଲା ଆପଣା ଉଆସ ।

(ଦାର୍ଢ୍ୟତାଭକ୍ତି ୫୫ତମ ଅଧ୍ୟାୟ)

କୃଷ୍ଣଦାସଙ୍କ ବଙ୍ଗଳା ଭକ୍ତମାଳ ଗ୍ରନ୍ଥରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ । ସେଥିରେ ଅଛି –

କବିରାଜ କୃତ ଗ୍ରନ୍ଥ ହୃଦୟେ ଲଇଲା,
ନୃପକୃତ ଗ୍ରନ୍ଥ ପ୍ରଭୁ ଚରଣେ କ୍ଷେପିଲା ।
ତହାତେ ରାଜାର ଚିତ୍ତେ ଅଭିମାନ ହୋଇୟା,
ବୁଡ଼ିୟା ମରିତେ ଗେଲା ସମୁଦ୍ରେ ଯାଇୟା ।
ରାଜା ନିଜ ଭକ୍ତ ପୁନ ଦୟା ଉପଜିଲ,
ନା ମର ତୋମାର ଗ୍ରନ୍ଥ ଅଙ୍ଗୀକାର କୈଲ ।
ଜୟଦେବ କୃତ ଗ୍ରନ୍ଥ ଦ୍ୱାଦଶ ଯେ ସର୍ଗେ,
ତେ କୃତ ବାରଶ୍ଳୋକ ଥାକିବେକ ଅଗ୍ରେ ।
(ଶ୍ରୀ ଭକ୍ତମାଳ ଗ୍ରନ୍ଥ, ୨ୟ ସଂସ୍କରଣ, ପୃ. ୧୩୩-୧୩୪)

କିନ୍ତୁ ଗଜପତି ପୁରୁଷୋତ୍ତମଦେବଙ୍କ ଅଭିନବ ଗୀତଗୋବିନ୍ଦ ଦେଖିଲେ ଜଣାପଡ଼େ ଯେ ତାହାର କୌଣସି ଶ୍ଳୋକ ଗୀତଗୋବିନ୍ଦର ପାଠାନ୍ତର୍ଭୁକ୍ତ ହୋଇନାହିଁ । ସଂସ୍କୃତ ଭକ୍ତମାଳ ଗ୍ରନ୍ଥରେ ରାଜା ସ୍ୱପ୍ନରେ ଦେଖୁଛନ୍ତି ଯେ କେହିଜଣେ ତାଙ୍କୁ କହୁଛନ୍ତି -

ଗୀତଗୋବିନ୍ଦସଦୃଶଂ ନାନ୍ୟକାବ୍ୟଂ ପ୍ରିୟଂ ମମ ।
ତ୍ୱତ୍କୃତେନାଽପି ତୁଷ୍ୟାମି ଭକ୍ତସ୍ତ୍ୱଂ ନାତ୍ର ସଂଶୟଃ ॥
ପରନ୍ତୁ ଗୀତଗୋବିନ୍ଦଂ ସ୍ୱୀକରୋତୁ ଭବାନପି ।
ପ୍ରଖ୍ୟାପୟତୁ ଲୋକେଽସ୍ମିନ୍ମମ ପ୍ରୀତିବିବର୍ଦ୍ଧନମ୍ ॥

ଏଥିରୁ ଜଣାଯାଏ ଯେ ଗୀତଗୋବିନ୍ଦକୁ ଗ୍ରହଣ କରିବା ସକାଶେ ରାଜା ସ୍ୱପ୍ନରେ ଆଦିଷ୍ଟ ହୋଇଥିଲେ । କିନ୍ତୁ ସଂସ୍କୃତରେ ଅଭିନବ ଗୀତଗୋବିନ୍ଦର ବାରଟି ଶ୍ଳୋକ ଗୀତଗୋବିନ୍ଦରେ ସ୍ଥାନପାଇବା କଥା କୁତ୍ରାପି ନାହିଁ । ମାତ୍ର ପରବର୍ତ୍ତୀ କାଳରେ ଯେଉଁମାନେ ଅଭିନବ ଗୀତଗୋବିନ୍ଦ ଦେଖିବାକୁ ପାଇନାହାନ୍ତି ସେମାନେ ହୁଏତ ଗୀତଗୋବିନ୍ଦର ପ୍ରକ୍ଷିପ୍ତ ଶ୍ଳୋକଗୁଡ଼ିକୁ ଅଭିନବ ଗୀତଗୋବିନ୍ଦର ବୋଲି ଭାବି ଏପରି ଆଖ୍ୟାୟିକା ସୃଷ୍ଟି କରିଛନ୍ତି ।

କିନ୍ତୁ ପ୍ରୋକ୍ତ ମଙ୍ଗଳାଚରଣଗୁଡ଼ିକର ବ୍ୟାଖ୍ୟାନ ଧରଣୀଧର କିମ୍ବା ବଳରିଦାସ ଦେଇ ନାହାନ୍ତି । ସଂଗୃହୀତ ତାଳପତ୍ର ପୋଥିରେ ମଧ ୨ୟ, ୩ୟ ଓ ୫ମର ତିନୋଟି ମଙ୍ଗଳାଚରଣ

ଶ୍ଳୋକ ବ୍ୟତୀତ ଅନ୍ୟ ସମସ୍ତ ମଙ୍ଗଳାଚରଣକୁ ବାଦ୍ ଦିଆଯାଇଛି । ପ୍ରତି ସର୍ଗ ଶେଷରେ ଥିବା ମଙ୍ଗଳାଚରଣ ଶ୍ଳୋକଗୁଡ଼ିକ ମୂଳ ଗୀତଗୋବିନ୍ଦରେ ନଥିଲା ବୋଲି ବିଚାର କଲେ ଉକ୍ତ ତିନୋଟି ଶ୍ଳୋକ ମଧ୍ୟ ପ୍ରକ୍ଷିପ୍ତ ହୋଇଯିବ । ଏହି ତିନୋଟି ଶ୍ଳୋକକୁ ବାଦଦେଲେ ଗୀତଗୋବିନ୍ଦର ଶ୍ଳୋକସଂଖ୍ୟା ହେବ ୭୩, 'ସାଧ୍ୱୀ ମାଧ୍ୱୀକ ...' ଶ୍ଳୋକକୁ ମିଶାଇ ।

କିନ୍ତୁ ପ୍ରାଚୀନ ଟୀକାମାନଙ୍କ ମଧ୍ୟରୁ ରାଣାକୁମ୍ଭ(ଖ୍ରୀ.୧୪୫୦)ଙ୍କ 'ରସିକପ୍ରିୟା' ଟୀକାରେ ଅର୍ଥଗୋବିନ୍ଦ ଅପେକ୍ଷା ନିମ୍ନଲିଖିତ ଶ୍ଳୋକଗୁଡ଼ିକ ଅଧିକା ଦେଖିବାକୁ ମିଳେ -

| | |
|---|---|
| ପ୍ରଥମ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୧) ରାସୋଲ୍ଲାସଭରେଣ ... |
| ଦ୍ୱିତୀୟ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୨) ସାକୂତସ୍ମିତମାକୁଳ ... |
| ତୃତୀୟ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୩) ତୀର୍ଯ୍ୟକ୍‌କଣ୍ଠବିଲୋଳ ... |
| ଚତୁର୍ଥ ସର୍ଗର ୨୬ ଶ୍ଳୋକ ପୂର୍ବରେ | (୪) ସା ରୋମାଞ୍ଚତି ... |
| ଶେଷ ମଙ୍ଗଳାଚରଣ ଶ୍ଳୋକ | (୫) ବୃଷ୍ଟିବ୍ୟାକୁଳ ... |
| ପଞ୍ଚମ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୬) ରାଧାମୁଗ୍ଧମୁଖାରବିନ୍ଦ ... |
| ଷଷ୍ଠ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୭) କିଂ ବିଶ୍ରାମ୍ୟସି ... |
| ସପ୍ତମ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୮) ପ୍ରାତର୍ନୀଳନିଚୋଳ ... |
| ଅଷ୍ଟମ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୯) ଅନ୍ତର୍ମୋହନମୌଳି ... |
| ନବମ ସର୍ଗର ଶେଷ ମଙ୍ଗଳାଚରଣ ଶ୍ଳୋକ | (୧୦) ସାନ୍ଦ୍ରାନନ୍ଦପୁରୋନ୍ଦରାଦି ... |
| ଦଶମ ସର୍ଗର ଶ୍ଳୋକ ୫୨ ପରେ | (୧୧) ଶଶିମୁଖି ତବ ଭାତି ... |
| ଶେଷ ମଙ୍ଗଳାଚରଣ ଶ୍ଳୋକ | (୧୨) ସ ପ୍ରୀତିଂ ତନୁତାଂ (ବା ପ୍ରୀତିଂ ବସ୍ତନୁତାଂ)... |
| ଏକାଦଶ ସର୍ଗର ଶେଷ ତିନୋଟି ଶ୍ଳୋକ | (୧୩) ସାନନ୍ଦଂ ... |
| | (୧୪) ଜୟଶ୍ରୀବିନ୍ୟସ୍ତୈ ... |
| | (୧୫) ସୌନ୍ଦର୍ଯ୍ୟୈକନିଧେ ... |

| | |
|---|---|
| ଦ୍ୱାଦଶ ସର୍ଗର ଶେଷ ଶ୍ଳୋକ ୭୦ ପରେ | (୧୬) ବ୍ୟାକୋଶଃ (ବା ବ୍ୟାଲୋଳଃ କେଶପାଶଂ ... |
| | (୧୭) ଈଷନ୍ମୀଳିତଦୃଷ୍ଟି, ... |
| | (୧୮) ଅଥ ସହସା ସୁପ୍ରୀତା, ... |
| ଶ୍ଳୋକ ୭୩ ପୂର୍ବରେ | (୧୯) ଶ୍ରୀ ଭୋଜଦେବପ୍ରଭବସ୍ୟ |
| ଶ୍ଳୋକ ୭୩ ପରେ | |
| ମଙ୍ଗଳାଚରଣ ଶ୍ଳୋକ | (୨୦) ଇତ୍ଥଂ କେଳିତତୀ, ... |

କିନ୍ତୁ ରାଣାକୁମ୍ଭଙ୍କ ପ୍ରାୟ ଦୁଇଶହ ବର୍ଷ ପୂର୍ବବର୍ତ୍ତୀ ଗୀତଗୋବିନ୍ଦର ପ୍ରସିଦ୍ଧ ସର୍ବାଙ୍ଗସୁନ୍ଦରୀ ଟୀକାକାର କବିରାଜ ନାରାୟଣ ଦାସ ୧୩ଶ ଶତାବ୍ଦୀରେ ମଧ ପ୍ରତି ସର୍ଗ ଶେଷରେ ଥିବା ମଙ୍ଗଳାଚରଣ ଶ୍ଳୋକଗୁଡ଼ିକୁ ଗ୍ରହଣ କରିନାହାନ୍ତି । କବିରାଜ ନାରାୟଣ ଦାସଙ୍କ ଦ୍ୱାରା ଉଦ୍ଧୃତ ହୋଇଥିବା ଧୃତିଦାସଙ୍କ ଗୀତଗୋବିନ୍ଦ ଉପରେ ଟୀକା ଏଯାବତ୍ ଅନୁପଲଭ୍ୟ ହେତୁ ଉପଲବ୍ଧ ଟୀକାମାନଙ୍କ ମଧ୍ୟରେ ସର୍ବାଙ୍ଗସୁନ୍ଦରୀ ଟୀକା ପ୍ରାଚୀନତମ । ଅତଏବ ଏଥିରେ ଗୃହୀତ ପାଠ ମଧ ବିଚାରଯୋଗ୍ୟ ଓ ଅପେକ୍ଷାକୃତ ଅଧିକ ଗ୍ରାହ୍ୟ ଅଟେ ।

ଉପର୍ଯ୍ୟୁକ୍ତ ଶ୍ଳୋକମାନଙ୍କ ମଧ୍ୟରୁ ଚତୁର୍ଥ ସର୍ଗର 'ସା ରୋମାଞ୍ଚତି ...' ଓ ଦଶମ ସର୍ଗର 'ଶଶିମୁଖି ତବ ଭାତି' ଏହି ଦୁଇଟି ଶ୍ଳୋକ ରସିକପ୍ରିୟା ଓ ସର୍ବାଙ୍ଗସୁନ୍ଦରୀ ଉଭୟରେ ମିଳୁଥିଲେ ସୁଦ୍ଧା ଅର୍ଥଗୋବିନ୍ଦରେ ମିଳୁନାହିଁ । କିନ୍ତୁ ସର୍ବାଙ୍ଗସୁନ୍ଦରୀ ପୂର୍ବବର୍ତ୍ତୀ ଧୃତିଦାସଙ୍କ ଟୀକା ଆଦି ଉପଲବ୍ଧ ନ ହେବା ପର୍ଯ୍ୟନ୍ତ ଏ ଦୁଇଟି ଶ୍ଳୋକ ମୂଳ ଗୀତଗୋବିନ୍ଦର ପ୍ରକୃତ ପାଠ କି ନୁହେଁ ସେ ସମ୍ବନ୍ଧରେ କିଛି କହି ହେବ ନାହିଁ । ଏ ଦୁଇଟି ଶ୍ଳୋକ ବ୍ୟତୀତ ରସିକପ୍ରିୟାରେ ଅଧିକ ଥିବା ଅନ୍ୟ କୌଣସି ଶ୍ଳୋକ ସର୍ବାଙ୍ଗସୁନ୍ଦରୀରେ ବ୍ୟାଖ୍ୟାତ ନୁହେଁ । ଅତଏବ ଏଥିରୁ ପ୍ରମାଣିତ ହେଉଛି ଯେ ସର୍ବାଙ୍ଗସୁନ୍ଦରୀ (୧୩ଶ ଶତାବ୍ଦୀ) ଟୀକାର ପରବର୍ତ୍ତୀ ଓ ରସିକପ୍ରିୟା (ଖ୍ରୀ.୧୪୫୦) ଟୀକାର ପୂର୍ବବର୍ତ୍ତୀ - ଏହି ଦୁଇର ମଧ୍ୟକାଳରେ ଉପର୍ଯ୍ୟୁକ୍ତ ଶ୍ଳୋକାବଳି ଗୀତଗୋବିନ୍ଦ ପାଠ ମଧ୍ୟରେ କାହାଦ୍ୱାରା ଅନ୍ତର୍ଭୁକ୍ତ କରାଯାଇଛି । ରାଣାକୁମ୍ଭ ଟୀକାରେ ଦ୍ୱାଦଶ ସର୍ଗର ୨୪ଶ ଗୀତ ପୂର୍ବରେ 'ଅଥ ସହସା ସୁପ୍ରୀତା ...' ଇତ୍ୟାଦି ସ୍ଥାନରେ ସର୍ବାଙ୍ଗସୁନ୍ଦରୀରେ

'ଅଥକାନ୍ତଂ ରତିଶ୍ରାନ୍ତଂ ...' ଇତ୍ୟାଦି ଶ୍ଳୋକ ଉପଲବ୍ଧ ହେଉଛି । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ ସର୍ବାଙ୍ଗସୁନ୍ଦରୀରେ ମଧ କେତେକ ପ୍ରକ୍ଷିପ୍ତ ଶ୍ଳୋକ ରହିଛି କାରଣ ସେଥିରେ ଅଥକାନ୍ତଂ ... ଇତ୍ୟାଦି ଶ୍ଳୋକ ଯଦି ଗୀତଗୋବିନ୍ଦର ହୋଇଥାନ୍ତା, ତେବେ ତାକୁ ବାଦ୍‌ଦେଇ ରାଣାକୁମ୍ଭ 'ଅଥ ସହସା ସୁପ୍ରୀତା ...' ଶ୍ଳୋକକୁ ଗ୍ରହଣ କରି ନ ଥାନ୍ତେ । ଏହି ଦୁଇଟି ମଧରୁ କୌଣସିଟି ତେଣୁ ଅର୍ଥଗୋବିନ୍ଦରେ ଗୃହୀତ ହୋଇନାହିଁ । ଧରଣୀଧର ମଧ ଏଥିରୁ କାହାରି ଟୀକା କରିନାହାନ୍ତି । ସର୍ଗ ଶେଷରେ ଥିବା ମଙ୍ଗଳାଚରଣ ଶ୍ଳୋକଗୁଡ଼ିକର ଅନୁବାଦ ମଧ ଧରଣୀଧର କରିନାହାନ୍ତି । ଗୀତଗୋବିନ୍ଦ ଶେଷରେ (କେତେକ 'ସାଧ୍ୱୀ ମାଧ୍ୱୀକ' ଶ୍ଳୋକ ପୂର୍ବରେ) -

'ଶ୍ରୀଭୋଜଦେବପ୍ରଭବସ୍ୟ ରାଧାଦେବୀସୁତଶ୍ରୀଜୟଦେବକସ୍ୟ,
ପରାଶରାଦିପ୍ରିୟବନ୍ଧୁକଣ୍ଠେ ଶ୍ରୀଗୀତଗୋବିନ୍ଦକବିତ୍ୱମସ୍ତୁ'

ଏହି ଶ୍ଳୋକଟି ଉପଲବ୍ଧ ହେଉଛି । କିନ୍ତୁ ଅର୍ଥଗୋବିନ୍ଦରେ ବା ଧରଣୀଧରଙ୍କ ଅନୁବାଦରେ ଏହା ଗ୍ରହଣ କରାଯାଇନାହିଁ । ଏହି ଶ୍ଳୋକଟି ସର୍ବାଙ୍ଗସୁନ୍ଦରୀ ଟୀକାରେ ଥିବା ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଲେଖିଥିଲେ * ମଧ ସର୍ବାଙ୍ଗସୁନ୍ଦରୀର ମ୍ୟୁଜିୟମ୍ ପୋଥିରେ** ଏହି ଶ୍ଳୋକଟିର ବ୍ୟାଖ୍ୟା ନାହିଁ । କେବଳ ଗୀତଗୋବିନ୍ଦ ପାଠ ଶେଷରେ ଏହା ସହିତ ଅର୍ଥଗୋବିନ୍ଦର ୭୪ତମ ଶ୍ଳୋକ (ଅତି ବିଷମ ସୁଗୀତେ, ଇତ୍ୟାଦି) ଉଲ୍ଲିଖିତ ହୋଇଛି କିନ୍ତୁ କାହାରି ବ୍ୟାଖ୍ୟା ଦିଆଯାଇ ନାହିଁ । ଅତଏବ ଏଥିରୁ ଜଣାପଡ଼େ ଯେ ଏ ଦୁଇଟି ଶ୍ଳୋକ ପ୍ରକ୍ଷିପ୍ତ । ଉପର୍ଯ୍ୟୁକ୍ତ ବିଚାରରୁ ଅର୍ଥଗୋବିନ୍ଦରେ ଗୃହୀତ ପାଠ, ଗୀତଗୋବିନ୍ଦର ଯଥାର୍ଥ ପାଠ ଅବଧାରଣ କରିବାରେ କିପରି ସାହାଯ୍ୟ କରେ ତାହା ସ୍ପଷ୍ଟ ପ୍ରତୀତ ହୁଏ । କିନ୍ତୁ ଏସବୁ ସତ୍ତ୍ୱେ ଅର୍ଥଗୋବିନ୍ଦରେ ଗୀତଗୋବିନ୍ଦର ମୋଟ ଶ୍ଳୋକସଂଖ୍ୟା ୭୨ ବୋଲି ସ୍ପଷ୍ଟ ଉଲ୍ଲେଖ ଥିଲେ ମଧ ଏଥିରେ 'ସାଧ୍ୱୀ ମାଧ୍ୱୀକ ...' ଇତ୍ୟାଦି ଶ୍ଳୋକକୁ ଗ୍ରହଣ କଲେ, ମୋଟ ୭୩ଟି ଶ୍ଳୋକ ହେଉଛି । ସର୍ବାଙ୍ଗସୁନ୍ଦରୀ ବ୍ୟାଖ୍ୟାକର୍ତ୍ତା ନାରାୟଣ ଦାସଙ୍କଠାରୁ ଆରମ୍ଭ କରି ପ୍ରାୟ ଅଧିକାଂଶ ବ୍ୟାଖ୍ୟାକାର ଏହି 'ସାଧ୍ୱୀ ମାଧ୍ୱୀକ ...' ଶ୍ଳୋକଟିର ବ୍ୟାଖ୍ୟା କରିଯାଇଛନ୍ତି । ୧୫ଶ ଶତାବ୍ଦୀରେ ଗଙ୍ଗାଦାସ

---

* K. N. Mahapatra - Sarvanga Sundari Tika on GitaGovinda.
(The Orissa Historical Research Journal, Vol. XIII, No. 3

** Vide 'ସର୍ବାଙ୍ଗସୁନ୍ଦରୀ ଟୀକା' Orissa State Museum Ms. No. L/129.

'ଛନ୍ଦୋମଞ୍ଜରୀ'ରେ ଏହି ଶ୍ଳୋକଟିକୁ ଯତିଭଙ୍ଗର ଉଦାହରଣରେ ଦର୍ଶାଇଛନ୍ତି । ପ୍ରସିଦ୍ଧ ଓଡ଼ିଆ ଟୀକାକାର ଧରଣୀଧର କିନ୍ତୁ ଏହାକୁ ଗ୍ରହଣ କରି ନାହାନ୍ତି । ହୁଏତ ଜୟଦେବଙ୍କ ଦ୍ୱାରା 'ତାଦୃଶ ଗର୍ବୋକ୍ତି ସମ୍ଭବ ନୁହେଁ' ଭାବି ଧରଣୀଧର ବ୍ୟାଖ୍ୟା କରିନାହାନ୍ତି ଅଥବା କାବ୍ୟ ବିଷୟର ବହିର୍ଭୂତ ବୋଲି ଏହି ଶ୍ଳୋକଟିକୁ ବାଦ୍ ଦେଇଛନ୍ତି । ବିଶେଷ ଭାବରେ ଏହା ମଧ୍ୟ ସମ୍ଭବ ହୋଇଥାଇପାରେ ଯେ ଜୟଦେବ କବିତା ରସ ରସିକ କୌଣସି ବ୍ୟକ୍ତି ପରବର୍ତ୍ତୀ କାଳରେ ଜୟଦେବଙ୍କ ଉତ୍କର୍ଷ ପ୍ରତିପାଦନ କରିବା ନିମିତ୍ତ ଏହି 'ସାଧ୍ୱୀ ମାଧ୍ୱୀକ ...' ଶ୍ଳୋକକୁ ପାଠାନ୍ତର୍ଭୁକ୍ତ କରିଛନ୍ତି । କିନ୍ତୁ ଜୟଦେବଙ୍କ ପରି ବୈଷ୍ଣବ ଭକ୍ତକବିଙ୍କ ପକ୍ଷରେ ତାଦୃଶ ଗର୍ବୋକ୍ତି ଅସମ୍ଭବ ମନେହୁଏ । ବିଶେଷତଃ ଛନ୍ଦୋମୟ ଗୀତଗୋବିନ୍ଦରେ ଛନ୍ଦୋରକ୍ଷାରେ ଜୟଦେବଙ୍କର ଯେଉଁପରି ଅସାଧାରଣ ପରିପାଟୀ ଓ ପାରଦର୍ଶିତା ପରିଲକ୍ଷିତ ହୁଏ, ସେଥିରେ ତାଙ୍କ ପକ୍ଷରେ କେବଳ ଏହି ଶ୍ଳୋକଟିରେ ଯତିଭଙ୍ଗ କରିଥିବା ବିଶ୍ୱାସ କରାଯାଇ ନ ପାରେ । ବୋଧହୁଏ, ତେଣୁ ଧରଣୀଧର ଏହି ଶ୍ଳୋକଟିକୁ ପ୍ରକୃତ ଜୟଦେବଙ୍କ ରଚିତ ବୋଲି ଗ୍ରହଣ କରି ନ ପାରି ଏହାର ବ୍ୟାଖ୍ୟା କରିନାହାନ୍ତି । କିନ୍ତୁ ବଜରି ଦାସ ପରବର୍ତ୍ତୀ କାଳରେ ଏହି ଶ୍ଳୋକର ଅର୍ଥ କରିଥିଲେ ସୁଦ୍ଧା ଗୀତଗୋବିନ୍ଦରେ ୭୨ ଶ୍ଳୋକ ଥିବା ପାରମ୍ପରିକ କଥାକୁ ଭୁଲି ନ ଯାଇ ଉଟ୍ଟଙ୍କିତ କରିଯାଇଛନ୍ତି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଏବଂ ଅବଧି ପ୍ରାପ୍ତ ମାତ୍ର ଦୁଇଗୋଟି ପ୍ରତି ମଧ୍ୟରୁ ଗୋଟିଏ କାଗଜ ପ୍ରତି ଯେଉଁଥିରେ ମୂଳସହ ଅନୁବାଦ ଅଛି ତାହା ସମ୍ପୂର୍ଣ୍ଣ । କିନ୍ତୁ ତାଳପତ୍ର ପୋଥିଟି ଯେଉଁଥିରେ ସଂସ୍କୃତ ଗୀତ ବା ଶ୍ଳୋକ ମୋଟେ ନାହିଁ ଅର୍ଥାତ୍ ଗୀତଗୋବିନ୍ଦର ଅର୍ଥ ବା କେବଳ ଅର୍ଥଗୋବିନ୍ଦ ହିଁ ଅଛି, ତାହା ଦୁର୍ଭାଗ୍ୟବଶତଃ ଅସମ୍ପୂର୍ଣ୍ଣ * । ହୁଏତ ତାହା ଯଦି ସମ୍ପୂର୍ଣ୍ଣ ହୋଇଥାନ୍ତା, ତେବେ 'ସାଧ୍ୱୀ ମାଧ୍ୱୀକ ...' ଶ୍ଳୋକର ବ୍ୟାଖ୍ୟା କବି ବଜରି ଦାସ କରିଛନ୍ତି କି ପରବର୍ତ୍ତୀକାଳରେ ଏହି ଶ୍ଳୋକଟିର ଅର୍ଥ ନ ପାଇ ଅନ୍ୟ କେହି ଅର୍ଥ ସଂଯୋଜନା କରିଛନ୍ତି, ତାହା ଜଣା ପଡ଼ନ୍ତା ଏବଂ ଗୀତଗୋବିନ୍ଦର ପ୍ରକ୍ଷିପ୍ତତା ନିର୍ଣ୍ଣୟ ଆହୁରି ସହଜ ହୁଅନ୍ତା ।

ମୂଳ ୭୨ଟି ଶ୍ଳୋକ ବ୍ୟତୀତ ଯେଉଁସବୁ ପ୍ରକ୍ଷିପ୍ତ ଶ୍ଳୋକାବଳୀ ଗୀତଗୋବିନ୍ଦରେ ସ୍ଥାନ ପାଇଛି, ସେସବୁର କ୍ରମପରିବର୍ତ୍ତନ ବିଭିନ୍ନ ସଂସ୍କରଣରେ ପରିଲକ୍ଷିତ ହେଉଛି । କିନ୍ତୁ ସେଗୁଡ଼ିକୁ ବାଦ୍‌ଦେଲେ ଅନ୍ୟାନ୍ୟ ଶ୍ଳୋକମାନଙ୍କର କ୍ରମ ପ୍ରାୟଶଃ ମିଳିଯାଉଛି । ଧରଣୀଧର ଓ ବଜରି

* ଦ୍ରଷ୍ଟବ୍ୟ ପୋଥି ବିବରଣ : ମୁଖବନ୍ଧ ପୃଷ୍ଠା - ୯

ଦାସଙ୍କ ଅର୍ଥଗୋବିନ୍ଦ ସହ ସଂସ୍କୃତ ଓ ଓଡ଼ିଆରେ ଥିବା ଅନ୍ୟାନ୍ୟ ପୁରାତନ ଟୀକାମାନଙ୍କ ସାହାଯ୍ୟରେ ଗୀତଗୋବିନ୍ଦ ଶ୍ଳୋକମାନଙ୍କ ପ୍ରକ୍ଷିପ୍ତତା ଏବଂ ପାଠୋଦ୍ଧାର ଏହିପରି ସବିଶେଷ ଭାବରେ ମଧ କରାଯାଇପାରେ ।

ଏତଦ୍‌ବ୍ୟତୀତ ଗୀତଗୋବିନ୍ଦର ପ୍ରତି ଗୀତକୁ ଅଷ୍ଟାପଦୀ କୁହାଯାଏ । ଏହିପରି ଅଷ୍ଟାପଦୀ ବା ଗୀତ ସର୍ବମୋଟ ୨୪ ଗୋଟି ଗୀତଗୋବିନ୍ଦରେ ଅଛି । ତାହାକୁ ବଜରି ଦାସ 'ଚଉବିଂଶ ଗାଥା' (୨୭/୨୯) ଓ 'ଚୌବିଶ ଗାଥା ଗୀତମତେ' (୧/୧୨୩) ବୋଲି କହିଛନ୍ତି । ସପ୍ତବିଂଶ ଅଧ୍ୟାୟରେ ଗାଥା ୨୪ଟିର ପରିଚୟ ଦେବାପାଇଁ ପ୍ରତି ଗୀତର ଆରମ୍ଭକୁ ଉଲ୍ଲେଖ କରି କବି ବଜରି ଦାସ ନିଜେ ଗୀତ ରଚନା କରି ଯାଇଛନ୍ତି ଏବଂ ତାହାର ଅର୍ଥ ମଧ ନିମ୍ନ ପ୍ରକାରେ ଦେଇଛନ୍ତି ।

ଗୀତ -

୧. ପ୍ରଳୟପୟୋଧି - କୃତବିଧୃସାରଂ,

୨. ଶ୍ରିତକମଳାକୁଚମଣ୍ଡଳ - କାରଂ ।

୩. ଲଳିତଲବଙ୍ଗ - ପରିବେଷ୍ଟିତଶ୍ରୁତି,

୪. ଚନ୍ଦନଚର୍ଚ୍ଚିତ - ମୃଗଗାୟ୍ଯରୁଚି ।

ପଦଂ ପଦାବଳି ସୁଧାରସ ଭାବେ,
ମଧୁର କୋମଳଧ୍ୱନି ଗାୟରସେ ପାବେ ।

ଅର୍ଥ -

| | | |
|---|---|---|
| | ସୁଜନେ ଶୁଣ ଅନ୍ୟ କଥା, | ଶ୍ରୁତି ଗାଥାର ଯେ ବ୍ୟବସ୍ଥା । |
| | ମହ୍ଲାର ରାଗେଣ ଗୀୟତେ, | ଚଉବିଂଶ ଗାଥାର ଏ ଅର୍ଥେ । |
| ୧. | 'ପ୍ରଳୟପୟୋଧି' ପ୍ରକାର, | ଯେ ଦଶବିଧିର ବିଚାର । |
| ୨. | 'ଶ୍ରିତକମଳାକୁଚ' ପରେ ॥ | ଏ ଅର୍ଥ ତୃତୀୟ ଗାଥାରେ । |

| | | | | |
|---|---|---|---|---|
| ୩. | 'ଲଳିତଲବଙ୍ଗଲତା'ର | ॥ | ଏ ଅର୍ଥ ଚତୁର ଗାଥାର | । |
| ୪. | 'ଚନ୍ଦନଚର୍ଚ୍ଚିତ' ଯେ କହି | ॥ | ପଞ୍ଚମ ଗାଥା ଏ ଅଟଇ | । |
| | ଏକ ପଦକୁ ଆଉ ବଳି | ॥ | ଅମୃତ ପ୍ରାଏ ଅଛି ଝଳି | । |
| | ମଧୁର ଧ୍ୱନି କରି ଭାବେ | ॥ | କୋମଳ ପ୍ରିୟରସ ଗାବେ | । |

ଗୀତ -

୫. **ସଞ୍ଚରଦଧରହରି** - ଧ୍ୟାନ ସ୍ୱରୂପଂ,
୬. **ନିଭୃତନିକୁଞ୍ଜ** - ବିରହୀ ସନ୍ତାପଂ ।
୭. **ମାମିୟଂଚଳିତା** - ବିଲୋକିତନଷ୍ଟା,
୮. **ନିନ୍ଦତିଚନ୍ଦନ** - ବିରହୀ ବିନଷ୍ଟା ॥

ଅର୍ଥ -

| | | | | |
|---|---|---|---|---|
| ୫. | 'ସଞ୍ଚରଧର ହରିଧ୍ୟାନ' | ॥ | ଷଷ୍ଠ ଗାଥାର ଅର୍ଥମାନ | । |
| ୬. | 'ନିଭୃତ ନିକୁଞ୍ଜ' ଭିତରେ | ॥ | ଏ ଅର୍ଥ ସପ୍ତମ ଗାଥାର | । |
| ୭. | 'ମାମିୟଂଚଳିତା' ଯା କହି | ॥ | ଅଷ୍ଟମ ଗାଥା ଏ ଅଟଇ | । |
| ୮. | 'ନିନ୍ଦତିଚନ୍ଦନମିନ୍ଦୁ' ଯେ | ॥ | ନବମ ଗାଥାର ଟି ଏ ଯେ | । |

ଗୀତ -

୯. **ସ୍ତନବିନିହିତମପି** - ରତିଅଭିଳାଷେ,
୧୦. **ବହତିମଳୟଗିରି** - ମରଣ ବିକାଶେ ।
୧୧. **ରତିସୁଖସାରେ** - ଶୟନ ନିମଗ୍ନା,
୧୨. **ପଶ୍ୟତି ଦିଶି ଦିଶି** - ବାସକସଜ୍ଜା ।

ଅର୍ଥ -

| | | | | |
|---|---|---|---|---|
| ୯. | 'ସ୍ତନବିନିହିତ' ଯେ ମପି | ॥ | ରତିବିଳାପ ଏତେ ବ୍ୟାପି | । |
| ୧୦. | 'ବହତିମଳୟ' କନ୍ଦର | ॥ | ପବନେ ମଦନ ବିକାର | । |
| ୧୧. | 'ରତିସୁଖସାରେ' ଯା କହି | ॥ | ଦ୍ୱାଦଶ ଗାଥା ଏ ଅଟଇ | । |
| ୧୨. | 'ପଶ୍ୟତି ଦିଶି ଦିଶି' ଯେ ବା | ॥ | ତ୍ରିଦଶ ଗାଥା ଏ କହିବା | । |

ଗୀତ -

୧୩. କଥିତସମୟେ ହରି - ରସ ବିସ୍ତାରା,

୧୪. ସ୍ମରସମରୋଚିତ - ମଦନ ବିକାରା ।

୧୫. ସମୁଦିତମଦନ - ବିଲୋକିତ ହାରା,

୧୬. ଅନିଳତରଳ - ରୂପମୋହିତ କାରା ॥

ଅର୍ଥ -

୧୩. 'କଥିତ ସମୟେ' ଯେ କହି ॥ ଚତୁର୍ଦ୍ଦଶମ ଗାଥା ଏହି ।

୧୪. 'ସ୍ମରସମଭାବତ' ଯେ ଟି ॥ ଦଶପଞ୍ଚମ ଗାଥା ଏ ଟି ।

୧୫. 'ସମୁଦିତମଦନ' ଯେଣେ ॥ ଷଷ୍ଠଦଶମ ଗାଥା ଏଣେ ।

୧୬. 'ଅନିଳତରଳ' ଯେ କହି ॥ ସପତଦଶ ଗାଥା ଏହି ।

ଗୀତ -

୧୭. ରଜନିଜନିତଗୁରୁ - ଖଣ୍ଡିତ ଆଶା,

୧୮. ହରିରଭିସରତି - ମାନିନୀ ପରିଭାଷା ।

୧୯. ବଦସି ଯଦି କିଞ୍ଚିଦପି - ଲାବଣ୍ୟ ଶୋଭା,

୨୦. ବିରଚିତଚାଟୁ - ପ୍ରଣମିତ ରମ୍ଭା ।

ଅର୍ଥ -

୧୭. 'ରଜନିଜନିତ' ଯେ ଗାଥା ॥ ଅଷ୍ଟଦଶମର ବ୍ୟବସ୍ଥା ।

୧୮. 'ହରିରଭିସରତି' ଯେଟି ॥ ଊନବିଂଶତି ଗାଥା ସେଟି ।

୧୯. 'ବଦସି ଯଦି କିଞ୍ଚିଦପି' ॥ ବିଂଶତି ଗାଥାର ଏ ବ୍ୟାପି ।

୨୦. 'ଯେ ବିରଚିତ ଚାଟୁ' କହି ॥ ଏକବିଂଶତି ଗାଥା ଏହି ।

ଗୀତ -

୨୧. ମଞ୍ଜୁତରକୁଞ୍ଜତଳେ - ପ୍ରବିଶତୁ ଗୋରି,
୨୨. ରାଧାବଦନବିକସିତ - ହରି ।
୨୩. କିଶଳୟ ଶୟନ - ବିବିଧ ପରିରଙ୍ଗେ,
୨୪. କୁରୁ ଯଦୁନନ୍ଦନ - ବେଶ ବିଭଙ୍ଗେ ।

ଅର୍ଥ -

୨୧. 'ମଞ୍ଜୁତରକୁଞ୍ଜ' ଜେଷ୍ଟି ॥ ଦ୍ୱାବିଂଶ ଗାଥାର ଏ ଗୋଷ୍ଠି ।
୨୨. 'ରାଧାବଦନ ବିଲୋକନ' ॥ ତ୍ରିବିଂଶଗାଥା ଅର୍ଥମାନ ।
୨୩. 'କିଶଳୟ ଶୟନେ' ହରି ॥ ବିବିଧ ପରିରଙ୍ଗ କରି ।
୨୪. 'କୁରୁ ଯଦୁ ନନ୍ଦନ' ସଙ୍ଗେ ॥ ବିବିଧ ବେଶର ବିଭଙ୍ଗେ ।

ଏଥିରେ କବି ଗୀତଗୋବିନ୍ଦାନ୍ତର୍ଗତ ଗୀତମାନଙ୍କର ଏକ ସୂଚି ପ୍ରଦାନ କରିଛନ୍ତି । କବି ବଜରି ଦାସଙ୍କ କୃତ ଉପର୍ଯ୍ୟୁକ୍ତ ସ୍ୱରଚିତ ଗୀତ ଓ ତା'ର ଅର୍ଥ ଓଡ଼ିଆ ରଚନାରେ ସମ୍ପୂର୍ଣ୍ଣ ନୂତନ । 'ସ୍ତନବିନିହିତମପି'କୁ 'ସ୍ତନ ବିନିହିତ ଯେ ମପି' ଅର୍ଥ କରିବାରୁ ଏବଂ ରଚନାନ୍ତର୍ବର୍ତ୍ତୀ ଅନ୍ୟାନ୍ୟ ଅର୍ଥ ବ୍ୟାଖ୍ୟାନରୁ ମଧ୍ୟ ଜଣାଯାଏ ଯେ କବି ବଜରି ଦାସ ସଂସ୍କୃତଜ୍ଞ ପଣ୍ଡିତ ନଥିଲେ । ଏହାର ପ୍ରମାଣ ସ୍ୱରୂପ ତାଙ୍କ ରଚନାରୁ ଉଦ୍ଧାର କରି ନିମ୍ନରେ କତିପୟ ଦୃଷ୍ଟାନ୍ତ ଦିଆଯାଇପାରେ-

୧. 'ଅମନ୍ଦକନ୍ଦର୍ପଜ୍ୱରଜନିତବାଧାକୁଳତୟା'କୁ କବି ଅର୍ଥ କରିଛନ୍ତି -

ମନ୍ଦ ଯେ କନ୍ଦର୍ପ ଅଟଇ
ତା ଜ୍ୱରେ ପୀଡ଼ା ଅଛି ପାଇ । (୪/୪୨)

୨. ସେହିପରି 'ପତତି ପତତ୍ରେ' ଇତ୍ୟାଦିର ଅର୍ଥରେ କବି ଲେଖିଛନ୍ତି -

ପତତି ପକ୍ଷୀକି ଯେ କହି,
ସେ ଉଡ଼ି ପଡ଼ନ୍ତେ ଗୋ ସହି ।

୩. 'ସର୍ବୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରଃ' ଇତ୍ୟାଦିର ଅର୍ଥରେ ଲେଖିଛନ୍ତି -

ସର୍ବି ବୋଲିଣ ଯାକୁ କହି,
ତା ଗୁଣ ବହୁତ ଅଛଇ । (୨/୧୭)

ଏବଂ 'ଧୋୟୀ କବିଃ କ୍ଷ୍ମାପତିଃ'କୁ 'ସେ ଧୋଇ କବି ଇଛାପତି' କରିଛନ୍ତି ।

ଏସବୁ ସତ୍ତ୍ୱେ କବି ବଜରି ଦାସଙ୍କ ଅନୁବାଦ ସାଧାରଣ ବୋଧଗମ୍ୟ ଭାଷାରେ ହୋଇଥିବାରୁ ଏବଂ ଗୀତଗୋବିନ୍ଦର ପ୍ରକୃତ ପାଠୋଦ୍ଧାରରେ ସାହାଯ୍ୟ କରୁଥିବାରୁ ଗୀତଗୋବିନ୍ଦର ଏହା ଏକ ମୂଲ୍ୟବାନ୍ ଅନୁବାଦ ।

ବୋଧହୁଏ କବି ପରିବ୍ରାଜକ ଥିଲେ ଏବଂ ତାଙ୍କ ଉପରେ ତୁଳସୀ ରାମାୟଣର ପ୍ରଭାବ ପଡ଼ିଥିଲା । ତେଣୁ ସେ ଓଡ଼ିଆ ସଂସ୍କୃତ ମିଶା କେତେକ ଗୀତ ବା ପଦ କୀର୍ତ୍ତନ ଉଦ୍ଦେଶ୍ୟରେ ରଚନା କରି ଯାଇଛନ୍ତି । ତେଣୁ ଶେଷରେ ସେ କହିଛନ୍ତି -

ଶ୍ରୀଜୟଦେବଗୀତ ଭାବନକାରଂ
ଧନଜନସମ୍ପଦ ସଫଳସ୍ୱ ସାରମ୍ ।
ଧ୍ୟାନ ସମାଧି ଏହୁ ଗୁଣ ବିସ୍ତାରା
ଭବଜଳଧି ଜଳୁ ହୋଇବା ପାରା ॥

'ବିସ୍ତାର' ଓ 'ପାର' ସ୍ଥାନରେ ବିସ୍ତାରା ଓ ପାରା, ଓଡ଼ିଆ ଭାଷାରେ ଅଶୁଦ୍ଧ ହେଲେ ହେଁ କେବଳ ଦୀର୍ଘ ଆ-ସ୍ୱରର ଅନୁରଣନ ପାଇଁ କବି ପ୍ରୟୋଗ କରିଛନ୍ତି । ଏପରି ପ୍ରୟୋଗ ତୁଳସୀଦାସଙ୍କ ରଚନାରେ ବହୁତ ଦେଖାଯାଏ । ଏଥିରୁ ଜଣାଯାଏ ପ୍ରେମଭକ୍ତିର କବି ବଜରି ଦାସ ଭାଷାନିୟମର ଶୃଙ୍ଖଳାରେ ଆବଦ୍ଧ ନ ହୋଇ ପ୍ରେମଗୀତର କୀର୍ତ୍ତନ ପ୍ରେମର ସହିତ କରିଯାଇଛନ୍ତି । ତେଣୁ ସେ କହିଛନ୍ତି -

'ପ୍ରେମ ଭକତି ଯାର ନାହିଁ,
ସେ ପ୍ରାଣୀ ପାଇବ ତା କାହିଁ ।
ପ୍ରେମ ଭକ୍ତିଆ ଯେତେ ଲୋକ,
ମୁଁ ତାଙ୍କ ଚରଣ ସେବକ ।'

ଏହି ପ୍ରେମଭକ୍ତି କବିଙ୍କୁ ଅର୍ଥଗୋବିନ୍ଦ ରଚନାରେ ପ୍ରବୃତ୍ତ କରିଛି ଏବଂ ସେ କହିଛନ୍ତି -

ଶ୍ରୀହସ୍ତ ମସ୍ତକ ଉପରେ,
ବସାଇଛନ୍ତି ପ୍ରଭୁ ସ୍ନେହେ ।
ତେଣୁ ଏ ଗ୍ରନ୍ଥମାନଙ୍କର,
ଉପରେ ଅଟଇଟି ସାର ।
ମୁଁ ତୋର ଚରଣରେ ପଡ଼ି,
ମାଗୁଛି ଶିରେ କର ଯୋଡ଼ି ।
ଗୀତଗୋବିନ୍ଦ ଅର୍ଥମାନ,
ମୋ ହୃଦେ ହୋଇବ ପ୍ରସନ୍ନ ।
ଅର୍ଥଗୋବିନ୍ଦ ନାମେ ଗ୍ରନ୍ଥ
ଅଧା ମୁଁ କରିବି ଉକତ । (୨/୩୦-୩୪)

କବି ନିଜେ ସଂସ୍କୃତଜ୍ଞ ନଥିବାରୁ କିମ୍ବା ଗର୍ବୋକ୍ତି ପରିହାର ପୂର୍ବକ ଦୈନ୍ୟପ୍ରକାଶ ନିମିତ୍ତ ନିଜକୁ 'ମୂଢ଼ ବଜରି ଦାସ' ବୋଲି ବହୁଥର କହିଛନ୍ତି । କବିଙ୍କର ଏହି ଦୈନ୍ୟୋକ୍ତି ଓ ପ୍ରେମମୂଳା ଭକ୍ତିଭାବରୁ, କବି ବୈଷ୍ଣବଧର୍ମାବଲମ୍ବୀ ଥିଲେ ବୋଲି କୁହାଯାଇପାରେ ।

## ଭାଷା ବିଚାର :

କବିକୃତି ଅର୍ଥଗୋବିନ୍ଦର କେତେକ ଶବ୍ଦ ପ୍ରୟୋଗ ମଧ୍ୟ ଭାଷାତାତ୍ତ୍ୱିକ ଦୃଷ୍ଟିରୁ ପ୍ରଣିଧାନଯୋଗ୍ୟ । ଭାଷାତାତ୍ତ୍ୱିକ ବିଚାର ପାଇଁ ଅଧୋଲିଖିତ କେତେକ ଶବ୍ଦ ସେଥିରୁ ପ୍ରଦତ୍ତ ହେଲା - ଗ୍ରାହିଜ (< ଗ୍ରାହ୍ୟ), ଉଜ (< ଉଜଳ < ଉଜ୍ଜଳ < ଉଜ୍ଜ୍ୱଳ), ବଇଦୁଜ ପୋସେଲା, ଅନାବତା (ସବୁଆଡ଼େ ଅର୍ଥରେ), ଚଉତୁନା, ଏହେନ୍ନେ, ଏହେର୍ଣ୍ଣେ, ଶାହାସ୍ତ୍ର (< ଶାସ୍ତ୍ର), 'ଫଳିଛି ଗୋଟା ଗୋଟା ହୋଇ', ମେଳକ୍ଷ (< ମେଳଛ < ମ୍ଲେଚ୍ଛ),ଯିସ, କିସ, ତ୍ୱ (ତୋ = ତୁଅ < ତୁଏ < ତ୍ୱୟା), ରୋଧିର, ତୁକୁ, ମୁକୁ, ବିରୋଳି (ବ୍ୟକ୍ତ କରିବା ଅର୍ଥରେ), ଆଲୋ, ସମାଦ (ସମାଧାନ ଅର୍ଥରେ), ତାସ୍ୱେ (< ତାଇ < ତାତି < ତପ୍ତି), ଆତଙ୍ଗେଣ, ସେନ୍ନା, ସେନ୍ହା, ନାରାଜ (< ନାରାଚ), ମୁଷିତ (< ମୂର୍ଚ୍ଛିତ), ଭୁଥା (< ଭର୍ତ୍ତା), ଚିନ୍ତାସ୍ୱେ, ବିକଳି, ଫୁକାରି, ହାଦେ (< ହଠାତ୍),ଦେସି, ସୋରେହା, ପଥୁକୁ, ଜଙ୍ଘନରେ

ପଦାର୍ଥନା (ଅଭ୍ୟର୍ଥନା ଅର୍ଥରେ), ରାହି (< ରାଧିକା), ପିସ୍ଥଡ଼ା, କ୍ଳେହୁଣି, କଳସନ୍ତୁ (< କଲୁଷଂ ତୁ ?), ସାଓ୍ୱୋଇଣ, ମୁକୁ, ମୁଇଁ, ଅନସ୍ଥ (< ଅନୁନସ୍ଥ), ଶରୀ, ଦେବାସ୍ଥେଂ, ଯୌବନଛୁ, ନେବର୍ତ୍ତ, ଧ୍ୱାନ୍ତାନ୍ତ, ରୁଚିଦଧର (< ରୁଚିତାଧର ?), ଲୋତେକ, ଅନ୍ୟୋଥନିୟ, ଅହିରମ୍ଭ (ଆଭୀର + ଅମ୍ଭା = ଅହିର + ଅମ୍ଭ ?) କେନ୍ତେ, ହୋନ୍ତେ, ଇତ୍ୟାଦି । ଏଗୁଡ଼ିକର ପ୍ରୟୋଗ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେ ।

ଅର୍ଥଗୋବିନ୍ଦରେ ବ୍ୟବହୃତ ଶବ୍ଦମାନଙ୍କ ମଧ୍ୟରୁ ବହୁ ମଧ୍ୟସ୍ୱରଲୋପ (Syncope) ଶବ୍ଦ ଅଛନ୍ତି; ଯଥା : ମ୍ରକତ (୧୭/୨୬,୩୦), ପୁସ (୧୩/୭୦), ମ୍ଳଯାନିଳ (୧୮/ ୬୩), ଅପଘ୍ନ (୧୭/୩୫) । ସମାକ୍ଷରଲୋପୀ (Syllabic syncope) ଶବ୍ଦମାନଙ୍କ ମଧ୍ୟରେ ଗୋପ + ବାଳୀରୁ ଗୁଆଳୀ (୬/୨୬) ପରି କେତେକ ଶବ୍ଦ ଦେଖାଯାଏ । ନଙ୍ଗରାଏ (୧୭/୩୭, ୨୬/୧୧) ପରି କେତେକ ଶବ୍ଦରେ ଆଦିସ୍ୱରଲୋପ (Aphesis) ହୋଇଛି । 'ପାରୁଶ' (୨୩/୪୫) ପରି କେତେକ ଶବ୍ଦରେ ସ୍ୱରାଗମ (Anaptyxix) ହୋଇଛି । ନିବୃତାଇ (୩/୬୯) ନିବର୍ତ୍ତ > ନିବୃତ, ଦୁଗମ (୪/୩୮) = ଦୁର୍ > ଦୁ - ଗମ, ମୃତି (୧୦/୪୦) (< ମୂର୍ତ୍ତି)ରେ ବର୍ଣ୍ଣବ୍ୟତ୍ୟୟ ହୋଇଛି । ଦୁଗଅଳରୁ ହୋଇଥିବା ଦୁଗଳ (୨୪/୩୨) ସଙ୍କୋଚନ (ବା contraction)ର ଉଦାହରଣ । ଏତଦ୍‌ବ୍ୟତୀତ ପ୍ରାକୃତରୁ ସିଧାସଳଖ ଆସିଥିବା କେତେକ ପ୍ରାଚୀନ ଶବ୍ଦ ମଧ୍ୟ ଅର୍ଥଗୋବିନ୍ଦରେ ଦେଖିବାକୁ ମିଳେ । ଯଥା -

ଝାଡି (୭/୧୧) < ପ୍ରା. ଝଡ଼ି < ସଂସ୍କୃତ. ଝଟିତି ।
ହେଠ (୮/୧୩) < ପ୍ରା. ହେଟ୍‌ଠ < ସଂ. ଅଧଃ ।
ଘେତି (୧୭/୫) < ପ୍ରା. ଘେତ୍ତି ।
ବୋଲ (୯/୪୩) < ପ୍ରା. ବୋଲ୍ଲ ।

**ଶୈଳୀ :**

ଅର୍ଥଗୋବିନ୍ଦର ଅନୁବାଦ ଶୈଳୀ ସମସ୍ତ ଅନୁବାଦଠାରୁ ସ୍ୱତନ୍ତ୍ର । ଅନ୍ୟାନ୍ୟ ଅନୁବାଦମାନଙ୍କରେ ଯେପରି କେବଳ ଭାବାବବୋଧ ନିମିତ୍ତ ସରଳଭାଷାରେ ଅଭିବ୍ୟକ୍ତି

କରାଯାଇଥାଏ, ଏଥିରେ ତାହା ଅପେକ୍ଷା ଆଉ ଏକ ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । ଏଥିରେ ଅନୁବାଦ କଲାବେଳେ କବି ସଂସ୍କୃତ ଶବ୍ଦମାନଙ୍କର ଅର୍ଥ ମଧ୍ୟ ଦେଇଛନ୍ତି । ଉଦାହରଣ ସ୍ୱରୂପ -

ତିମିର ଯେତି ଅନ୍ଧକାର (୧୩/୭୪)
ଇନ୍ଦୁ ଯେ ଚନ୍ଦ୍ରମାକୁ କହିଂ (୧୫/୩) ଇତ୍ୟାଦି ।

ଅର୍ଥଗୋବିନ୍ଦ ଭାଷାତାତ୍ତ୍ୱିକ ଦୃଷ୍ଟିରୁ ସେତେ ଆବଶ୍ୟକ ନ ହେଲେ ମଧ୍ୟ ଏବଂ ଅକ୍ଷରାନୁବାଦ ଦୃଷ୍ଟିରୁ ପ୍ରଧାନ ନ ହେଲେ ସୁଦ୍ଧା; ସରଳ ଓ ସୁବୋଧ ଭାଷାରେ ଅର୍ଥାବବୋଧ ପାଇଁ ତଥା ଗୀତଗୋବିନ୍ଦର ପ୍ରକୃତ ମୂଳପାଠର ଅବଧାରଣ ନିମିତ୍ତ ଏହାର ଅନୁଶୀଳନ ଆବଶ୍ୟକ । ହୁଏତ କବିଙ୍କ ଅନ୍ୟାନ୍ୟ ରଚନା ଭବିଷ୍ୟତରେ କବିଙ୍କ ସମ୍ବନ୍ଧରେ ସମଧିକ ପରିଚୟ ପ୍ରଦାନରେ ସହାୟକ ହେବ । ବର୍ତ୍ତମାନ ଓଡ଼ିଆ ପାଠକ ଓ ଓଡ଼ିଆ ସାହିତ୍ୟରେ କବି ବଜରିଙ୍କ କୃତିର ଯଥାର୍ଥ ବିବେଚନ ଓ ଅନୁଶୀଳନ ନିମିତ୍ତ ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ଏହାର ସମ୍ପାଦନା କରାଗଲା * । ଓଁ ଶମ୍ ।

**ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ**
**ଓଡ଼ିଶା, ଭୁବନେଶ୍ୱର -୬**

**ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ**
**ସମ୍ପାଦକ**

**ତା ୧୫.୧୨.୧୯୭୦**

* ସଂପାଦନା ସମୟରେ ସଂଶୋଧିତ ଶବ୍ଦକୁ ଚନ୍ଦ୍ରବନ୍ଧନୀ ( )ରେ ଏବଂ ଅଭାବ ପୂରଣ ପାଇଁ ସଂଯୋଜିତ ଶବ୍ଦକୁ ବର୍ଗବନ୍ଧନୀ [ ] ମଧ୍ୟରେ ରଖାଯାଇଛି । ଏହି ଗ୍ରନ୍ଥର ସମ୍ପାଦନା ଓ ମୁଖବନ୍ଧ ଲେଖା ମୁଖ୍ୟ ସଂପାଦକ ମୋର ପୂଜ୍ୟ ଅଧ୍ୟାପକ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ମାର୍ଗ ନିର୍ଦ୍ଦେଶରେ ହୋଇଥିଲା । ଏବେ ଏହାର ପରିବର୍ତ୍ତିତ ଓ ପରିମାର୍ଜିତ ସଂସ୍କରଣ ପ୍ରକାଶ କରାଗଲା । *ସଂପାଦକ*

# ଅର୍ଥ ଗୋବିନ୍ଦ

## ପ୍ରଥମ ଅଧ୍ୟାୟ

ଜୟ ତୁ ଜୟ ଆଦିମୂଳ । ଜୟ ଅନାଦି ଶୂନ୍ୟ ଠୁଳ[୧] ।୧।
ଅପାର ମହିମା ମୁରାରି । କେ କହିପାରେ[୨] ଅନ୍ତ କରି ।୨।
ଅରୂପ ରୂପ ପରକାଶ । ବୋଲାଅ ବସୁଦେବ ଶିଷ ।୩।
ମଥୁରାପୁରେ ଜନ୍ମ ହୋଇ । ଗୋପକୁ ଅଇଲ ପଳାଇ ।୪।
ନନ୍ଦ ମନ୍ଦିରେ ସୁଖେ ହରି । ବାଳୁତ ଭାବେ ଲୀଳା[୩] କରି ।୫।
ଯେଉଁ ଦିନରୁ ପୀତବାସ । ଗୋପରେ ହୋଇଲେ ପ୍ରବେଶ ।୬।
ଆନନ୍ଦ କହୁ ନ ସରଇ । ଉତ୍ସବ[୪] ଦିନୁ ଦିନୁ ହୋଇ ।୭।
ସବୁରି କଷ୍ଟ ଗଲା ଦୂର । ପାଇଲେ ବ୍ରହ୍ମାଣ୍ଡ ଠାକୁର[୫] ।୮।
ସବୁରି କନ୍ଦେ ଲକ୍ଷ୍ମୀ ଘୋଟି । ଚନ୍ଦ୍ରପାଦରେ[୬] ଅଛି ଖଟି ।୯।
ଧନ ସଂପଦ ଅବା ଯେତେ । କେ କହିପାରିବ ଯୁଗତେ ।୧୦।
ଯାହାକୁ ନ ମିଳଇ ପେଜ । ସେ କଲା ଅମୃତ ଗ୍ରାହିଜ ।୧୧।
ଯାହାକୁ ନ ମିଳଇ କନା । ସେମାନେ ପହୁଡ଼ିଲେ ବନା ।୧୨।
ଖଣ୍ଡି କୁଡ଼ିଆ ଯାର ବାସ । ସେ କଲା ସୁବର୍ଣ୍ଣ ଉଆସ ।୧୩।
ଚିତ୍ର ବିଚିତ୍ରମୟେ ପୁର । ହୋଇଲା ସବୁଙ୍କରି ଘର ।୧୪।
ସ୍ୱଭାବେ ବିଶ୍ୱକର୍ମା[୭] ଆସି । ଗଢ଼ିଛି ପୁରମାନ ବସି ।୧୫।

---

୧. ଖ. ସ୍ଥଳ
୨. କ. ପାରୁ
୩. କ. ନୀଳା
୪. ଖ. ଉତ୍ସବ
୫. ଖ. ସବୁରି କଷ୍ଟ ଗଲା ଦୂର । ପାଇଲେ ବ୍ରହ୍ମାଣ୍ଡ ଠାକୁର ।୭।
ଆନନ୍ଦ କହୁ ନ ସରଇ । ଉତ୍ସବ ଦିନୁଦିନ ହୋଇ ।୮।
୬. ଖ. ପଦରେ
୭. କ. ସଭାବେ ବିସକର୍ମା

କେବଣ ଘରଗୋଟା[୧] ସଜ । ଅଷ୍ଟରତ୍ନରେ[୨] କଲା ଭଜ ।୧୬।
କେବଣ ଘର ନୀଳାମୟେ[୩] । ମୁକୁତା ପୁଞ୍ଜାପୁଞ୍ଜା[୪] ଶୋହେ ।୧୭।
କାହିଂ ମାଣିକ୍ୟ[୫] କଲା ମିଶା । ମର୍କତେ[୬] କେଉଂ ଘର ଦିଶା ।୧୮।
କେବଣ ଘରେ ବଇଡୁଜ[୭] । ଶେଣି ଭାବରେ କଲା ଭଜ ।୧୯।
ପୋୟେଲା ସ୍ତମ୍ଭ କେଉଂ ଘରେ । ଛାଇଲା ତେଜପତ୍ର ପରେ ।୨୦।
ଲଛ କରିଣ ପାଟସୁତା । ବାନ୍ଧିଛି ଗଣ୍ଠି ଅନାବତା ।୨୧।
ୟେରୂପେ ଅନେକ ନବର । କେ କାହିଁ କରିବ ଗୋଚର ।୨୨।
ମଧରେ ନନ୍ଦର ଉଆସ[୯] । ୟେ ସର୍ବେ[୧୦] ବେଢ଼ି ଚଉପାଶ ।୨୩।
ସବୁରି ଘରେ ନୃତ୍ୟଗୀତ । ଆନନ୍ଦ ସବୁଙ୍କରି ଚିତ୍ତ ।୨୪।
କାହାରି ହୃଦେ ଭୟେ ନାହିଁ । ସମସ୍ତେ ବୋଲନ୍ତି ତୋହାଇଁ ।୨୫।
ଇନ୍ଦ୍ର ଚନ୍ଦ୍ର କୁବେର ଛାର । ଆମ୍ଭ[ର] ଚରଣେ କିଙ୍କର ।୨୬।
କେତେ ମାତର କଂସ ରାଣ । ଭେଟିଲେ ବୁଝିବା ତା ଟାଣ ।୨୭।
ଯେଉଁ ଗୋପାଳେ କଂସ ଚାର । ଦେଖିଣ ହୋଅନ୍ତି କାତର ।୨୮।
ସେ ୟେବେ ଏମନ୍ତ କରିଲେ[୧୧] । ଗୋବିନ୍ଦ ଭରସା ପାଇଲେ ।୨୯।
ଯାହାର ପ୍ରଭୁ ଟାଣ ହୋଏ । ତାର ସେବକ ଗାଢ଼ କହେ ।୩୦।
ଏଥୁ ଉତ୍ତାରୁ[୧୨] ଅନ୍ୟ ବାଣୀ । ସୁଜନେ ଶୁଣିମା କାହାଣୀ[୧୩] ।୩୧।
ଶ୍ରୀକୃଷ୍ଣ ମହିମା ଅପାର । ନ ଜାଣେ ବ୍ରହ୍ମାଦି ଶଙ୍କର ।୩୨।
ମୁନିମାନେହେ ଯାକୁ ଧାୟି । କୋଟି କଷ୍ଟରେ ଭେଟ ନାହିଁ ।୩୩।
ନନ୍ଦ ଯଶୋଦା ଭାଗ୍ୟ ଏଡ଼େ । ତାକୁ ଧଇଲେ କାଖ କୋଡ଼େ ।୩୪।

---

୧. ଖ. ଗୋଟି
୨. ଙ. ରତ୍ନେଣ
୩. ଖ. ଲୀଳା
୪. ଙ. ପୁଞ୍ଜିପୁଞ୍ଜି
୫. କ. ମାଣିକ
୬. ଖ. ମୁକତେ
୭. ଖ. ବଇଁଡୁଜ
୮. ଙ. ବେ ବହି
୯. ଙ. ଉଆସ
୧୦. ଖ. ଏମନ୍ତେ
୧୧. ଙ. ବହିଲେ
୧୨. ଖ. ଏଥି ଉତ୍ତାରେ
୧୩. ଖ. ବୁଝ ପରିମାଣି

| | | |
|---|---|---|
| ଯେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର । | ସେ ବୋଲେ ଆମ୍ଭର କୁମର | ।୩୫। |
| ଗୋପୀ ଗୋପାଳମାନେ ମିଳି । | ବୋଲନ୍ତି ଆମ୍ଭ ବନମାଳୀ | ।୩୬। |
| ମୁରୁଛି ନ ପାରନ୍ତି କ୍ଷଣେ । | ଗୋଡ଼ାଇଥାନ୍ତି ଗଲେ ଯେଣେ | ।୩୭। |
| ବାଳୁତଭାବେ ନାନା ରଙ୍ଗେ । | ଖେଳନ୍ତି ଶ୍ରୀକୃଷ୍ଣର ସଙ୍ଗେ | ।୩୮। |
| ତାହାଙ୍କ ପୂର୍ବ ପୁଣ୍ୟବଳଂ[୧] । | ପ୍ରାପତ ହେଲା ତଥି ଫଳ | ।୩୯। |
| ବିବିଧ ରଙ୍ଗେ ବନମାଳୀ । | ଗୋପ ନଗରେ କଲେ କେଳି | ।୪୦। |
| ଅନେକ ଅସୁରମାନନ୍ତ[୨] । | ଲୀଳା[୩] ଭାବରେ କଲେ ହତ | ।୪୧। |
| ରୂପେ କି ପଟାନ୍ତର ଦେବା । | କୋଟି କନ୍ଦର୍ପ ଜିଣି ଶୋଭା | ।୪୨। |
| ବୃଦ୍ଧ ପୁରୁଷ ସ୍ତିରୀ ଯେବା । | ଦେଖି ହୋଇଲେ ନବଯୁବା | ।୪୩। |
| ଏମନ୍ତେ କିଛି ଦିନ[୪] ଅନ୍ତେ । | ନନ୍ଦ ନୃପତି ନିଶିପ୍ରାନ୍ତେ | ।୪୪। |
| ଗୋଗୋଷ୍ଠ ଯିବାକୁ ବହନ । | ସାଜିଲେ ଭାର ଶିକାମାନ | ।୪୫। |
| ଠେକି ମାଠିଆ ଆଦି ଯେତେ । | ସାଜିଲେ ନିତି ବିଧିମତେ | ।୪୬। |
| ଆପଣେ ସଜ ହୋଏ ବେଗ । | ପିନ୍ଧିଲା ମାଲକାଛଁ[୫] ଆଗ | ।୪୭। |
| ମୁଣ୍ଡରେ ଚଉତୁନା ଲାଇ[୬] । | ବାନ୍ଧିଲା ଶ୍ରବଣ ମିଶାଇ | ।୪୮। |
| ତାପରେ ଗୁଞ୍ଜ ଗୁଞ୍ଜମାନ[୭] । | ଖଞ୍ଜିଲେ ଯେ ବିଧିବିଧାନ | ।୪୯। |
| ପତନୀ ଖଣ୍ଡୁଆ ଗୋଟାଏ । | ଗଉଛି ହୋଇଲାକ କାୟେ | ।୫୦। |
| ବାମ କରେଣ ଟା କଂକଣ । | ଯୋଡ଼ି ବାଜଇ ରୁଣଝୁଣ | ।୫୧। |
| ଅଙ୍ଗୁଷ୍ଠିମାନଙ୍କରେ ମୁଦି । | ହୋଇଲା ଯେତେ ସଜବିଧି | ।୫୨। |
| କେନ୍ଦୁ ଲଉଡ଼ି[୮] ଧରି କରେ । | ମାଡ଼ିଲେ କଠାଉ ପୟରେ | ।୫୩। |
| କାନ୍ଧେ ବସାଇ ଶିକାଭାର । | ଗୋଷ୍ଠକୁ ହୁଅନ୍ତେ ବାହାର | ।୫୪। |
| ଶ୍ରୀକୃଷ୍ଣ କାନ୍ଦି ଗୋଡ଼ାଇଲେ । | ମୁଁ ଆଜ ଯିବି ତୁମ୍ଭ ତୁଲେ | ।୫୫। |

୧. ଖ. ଫଳ
୨. ଖ. ମାନତ
୩. ଢ. ନୀଳା
୪. ଢ. କନ୍ଥୁ
୫. ଖ. ମାଟିକାଛ
୬. ଢ. ପାଗ ଦେଲା ନେଇ
୭. ଢ. ପୁଞ୍ଜମାନ
୮. ଢ. ନଉଡ଼ି

ଦେଖିବି ଗୋଗୋଷ୍ଠ ନବର । କେତେ ବଛା[1] ଅଛି ଆମ୍ଭର ।୫୬।
ଯହୁଁ ଏମନ୍ତ କୃଷ୍ଣ କହେ । ଶୁଣି ବୋଲନ୍ତି[2] ନନ୍ଦରାଏ ।୫୭।
ବହୁତ ଦୂର ଗୋଷ୍ଠଘର[3] । ଚାଲିତ ନ ପାରିବୁ ଖର ।୫୮।
ସଙ୍ଗ ଗୋପାଳେ ଗଲେ ଛାଡ଼ି । ଆଜ ମୁଁ ପଛେ ଅଛି ପଡ଼ି ।୫୯।
ଭଲ ଦିନରେ ତୋତେ ନେବା । ଗୋଗୋଷ୍ଠ ଘର ଦେଖାଇବା ।୬୦।
ଯହୁଁ ସେମନ୍ତ କହେ ନନ୍ଦ । ପୁଣି ହିଁ କାନ୍ଦିଲେ ଗୋବିନ୍ଦ ।୬୧।
କାନ୍ଦିବା ଦେଖି ନନ୍ଦରାଏ । କୃଷ୍ଣଙ୍କୁ ଆଶ୍ୱାସନା କଏ ।୬୨।
ଧରିଣ ଗୋବିନ୍ଦର କର । ଚଳିଲେ ଗୋଗୋଷ୍ଠ ନବର ।୬୩।
ଦଇବ ଯୋଗେ ପଥେ ଏକା । ଭେଟିଲେ ଆସୁଛି ରାଧିକା ।୬୪।
ଦେଖି ବିଚାର କଲେ ହରି । ଏ ତ ମୋ ପ୍ରାଣର ଈଶ୍ୱରୀ ।୬୫।
ଯତନେଁ[4] ଖୋଜୁଥିଲି ଯାହା । ଦଇବ ଭେଟ କଲା ତାହା ।୬୬।
ରାଧିକା ମନରେ ବିଚାରି । ଏମନ୍ତ ବେଳେ ଯେବେ ହରି ।୬୭।
ଏ ବନେ ଭେଟ ମୋତେ ହେବି[5] । ଆଉ କି କାମ କଷ୍ଟ ଥିବ ।୬୮।
ବିଚାରି ଆସୁ ଆସୁ ବାଟେ । କୃଷ୍ଣଙ୍କୁ ଭେଟିଲେ ନିକଟେ ।୬୯।
ଦୁହେଁ ଦୁହିଁଙ୍କ ମୁଖ ଦେଖି । ହୋଇଲେ କାମଶରେ ଦୁଃଖୀ ।୭୦।

ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃକେଳୟଃ ॥ ଶ୍ଳୋକ - ୧ ॥

ସଂଗତେ ଅଛନ୍ତି ଯେ ନନ୍ଦ । ଉପାୟେ ରଚିଲେ[6] ଗୋବିନ୍ଦ ।୭୧।
ଇନ୍ଦ୍ରଙ୍କୁ ସୁମରିଲେ ଅତି[7] । ବେଗେ ଅଇଲେ ସୁରପତି ।୭୨।
ମେଘେ ଆଚ୍ଛାଦିଲା ଗଗନ । ହୋଇଲା ରଜନୀ ଯେସନ ।୭୩।

---

୧. ଖ. ବହା
୨. ଖ. ବୋଲଇ
୩. ଖ. ତାର
୪. ଖ. ଯନେ ମୁଁ
୫. ଖ. ଯେବେ ଦେବ
୬. କ. ବଛିଲେ
୭. କ. ଭକ୍ତି

ନିବିଡ଼ ଅନ୍ଧାର ହୋଇଲା । ବନ ଭୁବନ ଏକ କଲା ।୭୪।
ତମାଳଦଳ ଶ୍ୟାମ ଦିଶେ । ମଣ୍ଡୁକୀ[୧] ନାଚନ୍ତି ହରଷେ ।୭୫।
ବିଜୁଳି ଘନ ଘନ ମାରେ । ଗର୍ଜନ କରଇ ଅପାରେ ।୭୬।
ଅଧିକ କି କହିବା କହଂ[୨] । ଦେହକୁ ନ ଦିଶଇ ଦେହ ।୭୭।
ଏମନ୍ତ ଦେଖି ନନ୍ଦରାୟେ । ମନେ ଉପୁଜେ ମହାଭୟେ ।୭୮।
ରାଧାକୁ ବୋଲଇ ଉତ୍ତର । କୃଷ୍ଣକୁ ଘେନି ଯାଅ ଘର ।୭୯।
ଏ ଯେ ରଜନୀ ପ୍ରାୟେ ମଣି । ଭୟ[୩] କରୁଛି ଚକ୍ରପାଣି ।୮୦।
ବହନ କରି ଘେନି ଯାଅ । ଗୃହେ ମୋ ପ୍ରବେଶ କରାଅ ।୮୧।
ଏମନ୍ତ କହି କୃଷ୍ଣତାତ । ଗୋଷ୍ଠକୁ ଚଳିଲେ ତ୍ୱରିତ ।୮୨।
ଏମନ୍ତେ ରାଧା କୃଷ୍ଣ ଦୁଇ । ହରଷ କହୁଁ ନ ସରଇ ।୮୩।
ଅତି ଆନନ୍ଦେ ଚଳିଗଲେ । କୁଞ୍ଜ ଗୃହରେ ପ୍ରବେଶିଲେ ।୮୪।
ଯମୁନାକୂଳେ ଏକାନ୍ତର । ବହଇ ମଳୟ ସମୀର ।୮୫।
କି ଲକ୍ଷ୍ୟ ଦେବା ସେ ବନକୁ । ରୁଚିଲା ଶ୍ରୀକୃଷ୍ଣ ରାଧାକୁ ।୮୬।
ସ୍ୱଭାବେ ଲତାମାନେ ଅତି । ନବ କୋମଳଁ[୪] ଶୋଭା ପାନ୍ତି ।୮୭।
ସେ ବୃକ୍ଷମାନଙ୍କର ପର । କୁସୁମ ଦିଶନ୍ତି ସୁନ୍ଦର ।୮୮।
ଭ୍ରମରମାନେ ତଥିପରେ । ରଡ଼ି ବୁଲନ୍ତି ମତ୍ତଭରେ ।୮୯।
ରସାଳ ତରୁଶିଖ[୫] ପର । ବକୁଳ ଦିଶନ୍ତି ସୁନ୍ଦର ।୯୦।
କୋକିଳମାନେ ତେଣୁ କରି । ଶବଦ କରୁଛନ୍ତି ପୂରି ।୯୧।
ଏମନ୍ତେ[୬] ନିକୁଞ୍ଜ ଭିତରେ । ନବ କମଳ ଶଯ୍ୟା[୭] ପରେ ।୯୨।
ବିବିଧ କୁସୁମ ଶେଯାଇଁ[୮] । ବସିଲେ ବେନିଜନେ ଯାଇଁ[୯] ।୯୩।

---

୧. ଖ. ମଣ୍ଡୁକ
୨. ଖ. ରହ
୩. ଖ. ଉଦେ
୪. ଖ. କୋମଳେ
୫. ଖ. ଶିଖା
୬. ଖ. ଏମନ୍ତ
୭. କ. ସେହ୍ୟା
୮. କ. ସେଯାଇ
ଖ. ସେଯାଇଁ
୯. ଖ. ଯାଇଁ

| | | | | |
|---|---|---|---|---|
| ନାନା ସୁଖାଦିମାନଙ୍କରେ | । | ଭାସିଲେ ଆନନ୍ଦ ସିନ୍ଧୁରେ | ।୯୪। |
| ଶୃଙ୍ଗାର ବିଧି ନାନାମତେ | । | ରଞ୍ଜିଲେ ଯେ ଜାଣେ ଯେମନ୍ତେ | ।୯୫। |
| ହୋଇଲା ଯେତେ କଥାମାନେ[୧] | । | କେ କହି ପାରିବ ବଚନେ | ।୯୬। |
| ଯେ ବ୍ରହ୍ମାକୁ ହିଁ ଅଗୋଚର | । | ଆନ ତ ମାନବ[୨] ମାତର | ।୯୭। |
| ତଥାପି ଶୁଣ ସାଧୁ ନର | । | ହୋଇଲା ଯେମନ୍ତ ଶୃଙ୍ଗାର | ।୯୮। |
| ଯେଣେ ସନ୍ତୋଷ ହେଲେ ହରି | । | ଥୋକାଏ କହିବା ବିସ୍ତାରି | ।୯୯। |
| ରାଧିକା ବାହୁଯୁଗେ ଧରି | । | କୃଷ୍ଣକୁ ସ୍ତନଯୁଗେ ଭରି | ।୧୦୦। |
| ଭିଡ଼ିଣ ଗାଢ଼ କରି ବାଳୀ | । | ହୃଦେ ଧରିଛି ବନମାଳୀ | ।୧୦୧। |
| ଅଧରେ ଚୁମ୍ବନ ହିଁ ଦେଲା | । | ନକ୍ଷତ୍ର[୩] ଅଙ୍ଗେ ଚଳାଇଲା | ।୧୦୨ |
| ଜାନୁ ତଟରେ କରି ତାର | । | ମାର ତ[୪] ହୋଇଲା ଅପାର | ।୧୦୩। |
| ବିପରୀତ କରିଣ ବାଳୀ | । | ବିବିଧ ରଙ୍ଗେ କଲା[୫] କେଳି | ।୧୦୪। |
| ରାଧିକା କାନ୍ତ ଯେ[୬] ଶ୍ରୀହରି | । | ତାହାକୁ ବେଗ ବେଗ କରି । | ।୧୦୫। |
| ଉପରେ ଥାଇଂଣ ଯୁଗତେ | । | କ୍ରୀଡ଼ା ସେ ଆରମ୍ଭିଲେ[୭] ଯେତେ | ।୧୦୬। |
| କେ କହିଁ[୮] କରିବ ଗୋଚର | । | ହୋଇଲା ଅପାରୁଁ ଅପାର[୯] | ।୧୦୭। |
| ସ୍ୱେ ନ୍ୟାସୁଁ[୧୦] କରି ତାର ଶ୍ୱାସ | । | ବାହାର ହୋଇଲା ବିଶେଷ | ।୧୦୮। |
| ତବଦ ଏଣୁ କରି ହୋଇ | । | ବଚନ ନ ପାରଇ କହି | ।୧୦୯। |
| ଜଘନ ଦୁଇ ତାର ଭଲା | । | ନ ଚଳି ଶିଥିଳ ହୋଇଲା | ।୧୧୦। |
| ଲୋଚନ ଦୁଇ ତେଣୁ କରି | । | ନ ଚାହିଁ ବୁଜିଲା ସୁନ୍ଦରୀ[୧୧] | ।୧୧୧। |
| ବାହୁ ଯୁଗଳ[୧୨] ଉହମିତ | । | ଯେଣୁ ତା ହୋଇଲା ବହୁତ | ।୧୧୨। |

୧. ଖ. ଯେତେ ଯେତେ
୨. କ. ମାନବି
୩. କ. ଲକ୍ଷତ୍ର
ଖ. ନକ୍ଷତ
୪. କ. ମାରିତ
୫. କ. କଲେ
୬. ଖ. ଏ
୭. କ. ଆରମ୍ଭିଲା
୮. ଖ. କାହିଁ
୯. ଖ. ଅପାରି
୧୦. ଖ. ଏନ୍ୟାସ୍ୱ
୧୧. କ. ସୁନ୍ଦେରୀ
୧୨. କ. ଯୁଗଳେ

ବନ୍ଧନ ଶିଥିଳ ହୋଇଲା । ହୃଦରୁ କାମବାଧା ଗଲା ।୧୧୩।
ଏମାନ ଉପୁଜିଲା ଯେଣୁ । ହରଷ ବେନିଜନେ ତେଣୁ ।୧୧୪।
ସୁରତି ରସ ବଢ଼ାଇଲେ । କେଶ ବସନ ସମ୍ଭାଳିଲେ ।୧୧୫।
ପ୍ରିୟାର କଣ୍ଠେ ମୁକ୍ତାହାର । ଖଞ୍ଜିଲେ ପ୍ରଭୁ ଚକ୍ରଧର ।୧୧୬।
ବିବିଧ ଅଳଙ୍କାରମାନ । ଖଞ୍ଜିଲେ ଯାର ଯେଉଁ ସ୍ଥାନ ।୧୧୭।
ଅତି ହରଷେ ଚଳିଗଲେ । ଯେ ଯାହା ଗୃହରେ ମିଳିଲେ ।୧୧୮।
ଶ୍ରୀରାଧା କୃଷ୍ଣ କେଳି ଯେହୁଂ[୧] । ଜୟଯୁଗୁତ ହୋନ୍ତୁ[୨] ସେହୁ ।୧୧୯।
ମୋ ଛାର ନ ଧରିବା ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ।୧୨୦।
ଭରସା କରିଅଛି ଯାହା । ପୂର୍ଣ୍ଣ କରିବେ[୩] ଚଉବାହା ।୧୨୧।
ଶ୍ରୀଗୀତ[୪] ଗୋବିନ୍ଦର ଅର୍ଥ । ଛନ୍ଦିବି ଅଧ୍ୟାମତେ ଗୀତ ।୧୨୨।
ଚୌବିଶ ଗାଥା ଗୀତ ମତେ । ବାସ୍ତରି ଶୋଳଙ୍କ[୫] ସହିତେ ।୧୨୩।
ଲେଖନ କରିବି ଗୋସାଇଁ । ଅର୍ଥ ଗୋବିନ୍ଦ ନାମେ ମୁହିଁ ।୧୨୪।
ଏ ବାଞ୍ଛା ପୂର୍ଣ୍ଣ କର ମୋରେ । ଜୟଯୁକ୍ତ ହୋଉ[୬] ତୁମ୍ଭରେ ।୧୨୫।
ଶ୍ରୀରାଧା ଶ୍ରୀକୃଷ୍ଣ ଚରଣ । କିଙ୍କର ଭାବେ[୭] ମୁଁ ଶରଣ ।୧୨୬।
ମୂର୍ତ୍ତ[୮] ବଜରି ଦାସ ପଶେ । ଆରତେ ଭବ ଭୟେ[୯] ତ୍ରାସେ ।୧୨୭।

*ଇତି ଶ୍ରୀ ଅର୍ଥ ଗୋବିନ୍ଦେ[୧୦] ସରସ କାବ୍ୟେ ମହାଗ୍ରନ୍ଥେ ମୂର୍ତ୍ତବଜରିଦାସେନ କୃତୌ ନାନ୍ଦୀପୂର୍ଣ୍ଣ ପ୍ରଥମୋଽଧ୍ୟାୟଃ[୧୧] ।*

---

୧. କ. ଯହୁଁ
୨. ଖ. ଯୁକ୍ତ ହୋଅନ୍ତୁ
୩. କ. ପୁନ୍ୟ କରିବା
୪. କ. ଶ୍ରୀପତି
୫. ଖ. ବାଥାସ୍ତରୀ ଶ୍ଲୋକ
୬. ଖ. ହେଉ
୭. ଖ. ଭାବେଣ
୮. ଖ. ମୁଁତ୍ତ
୯. ଖ. ଭୟ
୧୦. ଖ. ଗୀତଗୋବିନ୍ଦ
୧୧. ଖ. ନାମ ପ୍ରଥମାଧ୍ୟାୟ

# ଦ୍ୱିତୀୟ ଅଧ୍ୟାୟ

ଜୟତୁ ଜୟ ସରସ୍ୱତୀ । ଜୟତୁ ବ୍ରହ୍ମାଙ୍କ ଦୋହିତୀ[୧] ।୧।
ନମସ୍ତେ ବିଷ୍ଣୁର ଘରଣୀ । ଜଗତ ପାଳିବା କାରଣୀ[୨] ।୨।
ଅପାର ମହିମା ତୁମ୍ଭର । କେ କହି[୩] କରିବ ଗୋଚର ।୩।
ଭଗତ ଭାବେ ବଶ[୪] ହେଉ[୫] । ଅଭଗତିକି ଦୂରେ ଥାଉ ।୪।
ତୋର ଚରିତ ଯେବା କହେ । ତୁ ତାକୁ କରୁ ଗୋ ସଦୟେ ।୫।
ସଂସାରେ ଯେତେ କବିମାନ । ସମସ୍ତେ ତୋହୋର[୬] ନନ୍ଦନ ।୬।
ଏଥି ମଧ୍ୟରେ ଶ୍ରେଷ୍ଠ ରୂପ । ଯେ ଜୟଦେବ କବି ନୃପ ।୭।
ତୋର ଚରିତମାନ ଯେତେ । ସବୁ ତାହାର ଗର୍ଭଗତେ ।୮।
ସେ କବି ନୃପ କାଳେ ମାତ୍ର[୭] । ସାତଶ ପଞ୍ଚାଶ କବିତ[୮] ।୯।
ତଥି ମଧ୍ୟରେ ଶ୍ରେଷ୍ଠ ଯେବା । ତାହା ବିସ୍ତାରି କହିଦେବା ।୧୦।

ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେ ।
ଶୃଙ୍ଗାରୋତ୍ତରସତ୍‌ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନଃ
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିଃ କ୍ଷ୍ମାପତିଃ ॥ଶ୍ଳୋକ -୨॥

ଅର୍ଥ-

ଉମାପତିଧର[୯] ଯେ କବି । ସେ ଅତିଶୟେ ଅନୁଭବୀ ।୧୧।
ବଚନ ପଲ୍ଲବ ତାହାର । ଶୁଦ୍ଧ[୧୦] ନିର୍ଦ୍ଦୋଷ ତତ୍ତ୍ୱପର ।୧୨।

---

୧. କ. ଦୋହିତି
୨. ଖ. ନମସ୍ତେ ଜଗତ ଧାରିଣୀ
୩. ଖ. କାହିଁ
୪. କ. ବଶ୍ୟ
୫. ଖ. ହୋଉ
୬. କ. ତୁମ୍ଭର
୭. ଖ. ମାତ
୮. ଖ. ପର୍ବତ
୯. କ. ଧରି
୧୦. ଖ. ସୁଧା

ଶରଣ ନାମେ[୧] କବି ଯେତି । ଜାଣଇଁ ଗୂଢ଼ ଅର୍ଥ ସେତି ।୧୩।
ପଢ଼ି ପାରଇ ବେଗ[୨] କରି । ତା ତୁଲେ ତୁଲାଇ ନ ପାରି ।୧୪।
ଗୋବର୍ଦ୍ଧନ ଆଚାର୍ଯ୍ୟ କଥା । ଲେଖିଲେ ନ ସରଇ ପୋଥା ।୧୫।
ଶୃଙ୍ଗାର ଶ୍ଳୋକମାନ ଯେହି[୩] । ସେ ଭଲକରି ପାରେ କହି ।୧୬।
ସର୍ବୀ[୪] ବୋଲିଣ ଯାକୁ କହି । ତା ଗୁଣ ବହୁତ ଅଛଇ ।୧୭।
ନ ଶୁଣିଥିଲା କଥାମାନ । କହି ପାରଇ ସେ ବଚନ[୫] ।୧୮।
ସେ ଧୋଇ କବି ଇଚ୍ଛାପତି । ତା କଥା କହି ନୋହେ ଶାନ୍ତି[୬] ।୧୯।
ଶୁଣିଲା ମାତ୍ରେ ଶ୍ରୁତିଧର । ସେ ଆସି[୭] ଖଟଇଟି ଖର ।୨୦।
ତଥାପି ନ ଜାଣନ୍ତି କେହି । ବିଶୁଦ୍ଧ ଅର୍ଥମାନ କହି ।୨୧।
ଜୟଦେବହିଁ ସେ ଜାଣଇ । ବିଶୁଦ୍ଧ ଅର୍ଥମାନ କହି ।୨୨।
ସେ ତୋତେ ସେବା କଲେ ଯେଣୁ । ଏହେନେ[୮] କୃପାକଲୁ[୯] ତେଣୁ ।୨୩।
ଭଣ୍ଡାରେ ଅଧିକାରୀ କରି । ତାକୁ ଥୋଇଲୁ[୧୦] ଗୋ ସୁନ୍ଦରୀ ।୨୪।
କବିନୃପତି ନାମ ଦେଲୁ । ସବୁରି ଉପରେ ଥୋଇଲୁ ।୨୫।
ଏଣୁ ମହିମା ତାର[୧୧] ଯେତେ । କେ କହି ପାରିବ ଯୁଗତେ ।୨୬।
ଯେତେ ଶାହାସ୍ର[୧୨] ବିଦ୍ୟାବିଧି । ତୋର କୃପାରେ[୧୩] କଲେ ସିଦ୍ଧି ।୨୭।
ଗୀତ ଗୋବିନ୍ଦ ନାମେ ଗ୍ରନ୍ଥ । ସେ କବିନୃପଙ୍କର କୃତ୍ୟ[୧୪] ।୨୮।
ଉପମା ତିନିପୁରେ ନାହିଁ । ବଚନ[୧୫] ନୋହଇ ତୁଲାଇ ।୨୯।
ଶ୍ରୀହସ୍ତ ସନ୍ତକ ଗୁପତେ । ବସାଇଛନ୍ତି ହରି ସେଥେ[୧୬] ।୩୦।

---

୧. ଖ. ନାମି
୨. କ. ବେଗ୍ର
୩. ଖ. ଏହି
୪. କ. ସର୍ବି
ଖ. ଶୁଦ୍ଧ
୫. ଖ. ବଚନେ
୬. କ. ସ୍ୟାନ୍ତି
ଖ. ଖ୍ୟାତି
୭. କ. ସେ ରାଜା
୮. ଖ. ଏହେନେ
୯. ଖ. କରୁ
୧୦. ଖ. ପାଇଛୁ
୧୧. କ. ତୋର
୧୨. ଖ. ସହସ୍ର
୧୩. ଖ. କୃପାରୁ
୧୪. ଖ. କୃତ
୧୫. ଖ. ବଚନେ
୧୬. ଖ. ଏଥେ

ତେଣୁ ଏ ଗ୍ରନ୍ଥମାନଙ୍କର । ଉପରେ ଅଟଇଟି ସାର ।୩୧।
ମୁଁ ତୋର ଚରଣରେ ପଡ଼ି । ମାଗୁଛି ଶିରେ କର ଯୋଡ଼ି ।୩୨।
ଗୀତଗୋବିନ୍ଦ ଅର୍ଥମାନ । ମୋ ହୃଦେ ହୋଇବ ପ୍ରସନ୍ନ ।୩୩।
ଅର୍ଥଗୋବିନ୍ଦ ନାମେ ଗ୍ରନ୍ଥ[୧] । ଅଧା ମୁଁ କରିବି ଉକତ ।୩୪।
ତୁ ମୋତେ କର ଗୋ ସଦସ୍ୱେ । ତୁମ୍ଭ ନନ୍ଦନ ମୁଁ[୨] ଗୋ ମାଏ ।୩୫।
ଶୁଣ ସୁଜନ ଜନମାନେ । ଯେ ଅର୍ଥ ଗୋବିନ୍ଦ ଲେଖନେ ।୩୬।

ବାଗ୍‌ଦେବତାଚରିତଚିତ୍ରିତ ଚିତ୍ତସଦ୍ମା
ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ ।
ଶ୍ରୀବାସୁଦେବରତିକେଳିକଥାସମେତ-
ମେତଂ କରୋତି ଜୟଦେବକବିଃ ପ୍ରବନ୍ଧମ୍ ।।ଶ୍ଳୋକ -୩।।

ଗୀତ ପ୍ରବନ୍ଧ ବୋଲି ଯାହା । କରୋତି ଜୟଦେବ ତାହା ।୩୭।
କେମନ୍ତ ଜୟଦେବ ଅବା । ତାହା[୩] ବିସ୍ତାରି କହିଦେବା ।୩୮।
ବାକ୍ୟଦେବୀ ଯେ ସରସ୍ୱତୀ । ତାର ଚରିତେ ନିତ୍ୟ ମତି[୪] ।୩୯।
କ୍ଷଣହେଁ[୫] ନ ପାରଇ ଛାଡ଼ି । ନିରତେ ଥାଇ ଭାବେ ବୁଡ଼ି ।୪୦।
ସ୍ୱେ ସରସ୍ୱତୀର ଚରିତ । ସବୁ ତାହାର ଗର୍ଭଗତ ।୪୧।
ଚିତ୍ତ[୬] ଗୃହରେ ତାର ଭରି । ସବୁ ଥୋଇଛି[୭] ଯତ୍ନ କରି ।୪୨।
ଯେ ପଦ୍ମାବତୀ ନାମ କହି । ତାହାଙ୍କ ଭାରିଯା ଅଟଇ ।୪୩।
ଚରଣେ ଅଛଇ ତାହାର । ନୂପୁର ବର ମନୋହର ।୪୪।
ତାହା ସେ ନୃତ୍ୟ[୮] କରିବାରେ । ଚକ୍ରବର୍ତ୍ତୀ ବୋଲିଟି ତାରେ ।୪୫।
ଗୀତ ପ୍ରବନ୍ଧ ତା କେମନ୍ତ । ତାହି କହିବା ଶୁଣ ସନ୍ତ[୯] ।୪୬।
ଶିରୀ[୧୦] ବୋଲିଣ ଯାକୁ କହି । ଅର୍ଥରେ ଲକ୍ଷ୍ମୀ ସେ ଅଟଇ ।୪୭।

---

୧. ଖ. ଗୀତ
୨. ଖ. ମୁଁ ତୁମ୍ଭ ନନ୍ଦନ
୩. ଖ. ତାହି
୪. ଖ. ମାତି
୫. ଖ. କ୍ଷଣେହେଁ
୬. ଖ. ଚିତ୍ର
୭. ଖ. ଥୋଇଲା
୮. ଖ. ହୃତ
୯. ଖ. ସନ୍ତ
୧୦. କ. ସିର

ଯେ ବାସୁଦେବ ସେ ମୁରାରି । ଏକାନ୍ତେ ସେ ଏହାଙ୍କ ନାରୀ ।୪୮।
ଦୁହିଙ୍କ ରତିକ୍ରୀଡ଼ା କଥା । ମିଶିଣ ହୋଇଅଛି ପୋଥା ।୪୯।
କେମନ୍ତେ ଅଟଇ ଏ[୧] ଗୀତ । ସୁଜନେ ଶୁଣ ଏଥ[୨] ଅର୍ଥ ।୫୦।

ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୂହଳମ୍ ।
ମଧୁରକୋମଳକାନ୍ତପଦାବଳୀଂ
ଶୃଣୁ ତଦା ଜୟଦେବସରସ୍ୱତୀମ୍ ॥ ଶ୍ଳୋକ - ୪ ॥

ଯେ କେହୁ ପ୍ରାଣୀ ପ୍ରାଣୀଙ୍କର[୩] । ମନରେ ହୋଇଲା ବିଚାର ।୫୧।
ଅଧିକ କରି ସୁମରଣ । କରିବା ଶ୍ରୀପଦ୍ମ ଚରଣ ।୫୨।
ଏମନ୍ତ ହୋଇଲେ ଏ ଗୀତ । ପଢୁଣ ଥାଅ ଅବିରତ ।୫୩।
ଅଥବା ବିଳାସ କଳାର । ମନ ହୋଇଲା କୁତୁହଳ ।୫୪।
ତହିଁ ରସିକ[୪] ଜନମାନେ । ଏ ଗ୍ରନ୍ଥ ପଢ଼ ଅନୁକ୍ଷଣେ ।୫୫।
ଯେ ପ୍ରୀତି ସନ୍ଧିର ବିଚାର । ଏ ଗୀତେ ଜାଣିବ[୫] ଅପାର ।୫୬।
ଏ ପୁଣି[୬] କେମନ୍ତ ଅଟଇ । ଅମୃତ ମଧୁର ଘଟଇ ।୫୭।
ହୃଦସ୍ଥ କରଇ ନିର୍ମଳ । ଯେ ବାଞ୍ଛା[୭] ଦିଅଇ ସେ ଫଳ ।୫୮।
ଏକ ପଦକୁ ଆର ବଳି । ସରସ ଭାବେ ଅଛି ଝଳି ।୫୯।
ଏ ଯେନି ଗ୍ରନ୍ଥମାନଙ୍କର । ଉପରେ ଅଟଇ ସେ[୮] ସାର ।୬୦।
ମୁଁ କିସ କହିବିଟି ଅବା । ସୁଜନ ଜନେ ତ[୯] ବୁଝିବା ।୬୧।
ଗୀତଗୋବିନ୍ଦ ଅର୍ଥ ଯେଣୁ । ଅର୍ଥ ଗୋବିନ୍ଦ ହେଲା ତେଣୁ ।୬୨।
ସେ ବୁଧ[୧୦] ଏ ତହିଁର ସର[୧୧] । ବିବେକୀ[୧୨] ମନରେ ବିଚାର ।୬୩।

---

୧. ଖ. ସେ
୨. ଖ. ଏଥି
୩. ଖ. ଯେବେ କେହୁଣି ପ୍ରାଣିଙ୍କର
୪. ଖ. ତପିର ସିଦ
୫. କ. ଏ ଗୀତ ଜାଣିତ
୬. ଖ. ପୁଣ
୭. ଖ. ବାଞ୍ଛ
୮. ଖ. ସେ
୯. ଖ. ନ
୧୦. ଖ. ବିଦ
୧୧. ଖ. ଶର
୧୨. ଖ. ବିବେକ

ସୁଜନ ଜନଙ୍କ ନିମନ୍ତେ । ବଖାଣ କଲି ଅର୍ଥମତେ ।୨୪।
ସେହି[1] ଗୀତ ଶୁଣିଲେ ଅମୃତ । ଲାଗିବ ପିତା ଭାବ ସତ[2] ।୨୫।
ଏ ମୃତ[3] ଯେ କରଇ[4] ପାନ । ସେ ପ୍ରାଣୀ ନ ଲୋଡ଼ଇ ଆନ ।୨୬।
ତେଣୁ[5] ଏ ଅମୃତ ମଧୁର । ଖାଇଲା ଲୋକଙ୍କୁ ପଚାର ।୨୭।
ଏ ଅର୍ଥ ଗୋବିନ୍ଦ କାହାଣୀ । ଶ୍ରବଣେ ଶୁଣନ୍ତି ଯେ ପ୍ରାଣୀ ।୨୮।
ଭବ ସାଗରୁ ତରିଯାନ୍ତି । ଅନ୍ତେ ବୈକୁଣ୍ଠପୁର ପାନ୍ତି[6] ।୨୯।
ସୁଖରେ ଯେ କରେ ଗାୟନ । ସୁଫଳ ତାହାଙ୍କ ଜୀବନ ।୩୦।
ଯେ ଅବା ପଚାରନ୍ତି ଅର୍ଥ । ତାଙ୍କୁ ପ୍ରାପତ ସ୍ୱର୍ଗପଥ ।୩୧।
ଏ ଧ୍ରୁବବଚନ ପ୍ରକାଶ । ଦ୍ୱିତୀୟ ଅଧ୍ୟା ହୋଏ ଶେଷ ।୩୨।
ମୂଢ଼ ବନରି ଦାସ ଭଣେ । ଶ୍ରୀ ଜୟଦେବଙ୍କ ଚରଣେ ।୩୩।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ କବିପର୍ଯ୍ୟାୟ (୧) ବର୍ଣ୍ଣନେ*

*ମୂଢ଼ବନରିଦାସେନ କୃତୌ*

*ଦ୍ୱିତୀୟ ଅଧ୍ୟାୟଃ ।*

---

୧. ଖ. ଏ
୨. ଖ. ମତ
୩. ଖ. ଏ ଅମୃତ
୪. ଖ. କରେ
୫. ଖ. ଯେତେ
୬. ଖ. ପୁରେ ଥାନ୍ତି

# ତୃତୀୟ ଅଧ୍ୟାୟ

ଜୟତୁ ଜୟ ଜଗନ୍ନାଥ । ଜୟତୁ ଶଙ୍ଖ ଚକ୍ର ହାତ[୧] ।୧।
ଅପାର ମହିମା ତୁମ୍ଭର । ବେଦରେ ନୋହିଲା ବିଚାର[୨] ।୨।
ଏକରୁ ଅନେକ ପ୍ରକାଶ । ଅନେକ ମଧ୍ୟେ ଶ୍ରେଷ୍ଠ ଦଶ ।୩।

[ରାଗ ଲକ୍ଷଣ - ନିତମ୍ବିନୀଚୁମ୍ବିତବକ୍ତ୍ରପଦ୍ମଃ ଶୁକଦ୍ୟୁତିଃ କୁଣ୍ଡଳବାନ୍ ପ୍ରମତ୍ତଃ ।
ସଙ୍ଗୀତଶାଳାଂ ପ୍ରବିଶନ୍ ପ୍ରଦୋଷେ ମାଳାଧରୋ ମାଳବରାଗରାଜଃ ॥]

(ମାଳବଗୌଡ଼ରାଗେଣ ଗୀୟତେ)

ଗୀତ -

*ପ୍ରଳୟପୟୋଧିଜଳେ ଧୃତବାନସି ବେଦମ୍ ।*
*ବିହିତବହିତ୍ରଚରିତ୍ରମଖେଦମ୍ ।*
*କେଶବ ! ଧୃତମୀନଶରୀର ଜୟ ଜଗଦୀଶ ! ହରେ ।୧। ॥ ଧ୍ରୁବମ୍ ॥*

ଅର୍ଥ -

ମାଳବ[୩] ଗଉଡ଼ା[୪] ରାଗେଣ । ଗୀୟତେ ଗାଥା ଅର୍ଥ ଶୁଣ ।୪।
ପ୍ରଳୟ ସିନ୍ଧୁ ଜଳେ ଖାସ[୫] । ମୀନ ସ୍ୱରୂପେ ପୀତବାସ ।୫।
ଶଙ୍ଖାସୁରକୁ ବଧ କରି । ସଂକଟୁ ବେଦବିଧି ଧରି ।୬।
ବୋଇତ ଯେମନ୍ତ ପ୍ରକାରେ । ଅକ୍ଲେଶେ ଭାସଇ ସାଗରେ ।୭।
ସେ ରୂପେ ଉଦ୍ଧରିଲ ବେଦ । ବ୍ରହ୍ମାର ରଖିଲ ସମ୍ପଦ ।୮।
ଏହେନ୍ତେ ମୀନ ରୂପ ଧରି । ଯେ ବେଦ ବିଧିଟି ଉଦ୍ଧରି ।୯।
ହେ ହରେ ଜଗତ ଇଶ୍ୱର । ଜୟଯୁକ୍ତ ହୋଉ[୬] ତୁମ୍ଭର ।୧୦।

---

୧. ଡ. ହସ୍ତ
୨. ଖ. ଗୋଚର
୩. କ. ମାଳେବ
୪. ଖ. ଗୌଡ଼ା
୫. ଖ. ରାସ
୬. ଡ. ହେଉ

**ଗୀତ -**

*କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ ।*
*ଧରଣୀଧରଣକିଣଚକ୍ରଗରିଷ୍ଠେ ।*
*କେଶବ ! ଧୃତକଚ୍ଛପରୂପ ! ଜୟ ଜଗଦୀଶ ! ହରେ ।୨।*

ଅର୍ଥ -

କେଶବ କଚ୍ଛପ ରୂପେଣ । ଧରଣୀ ଧଇଲ ପୃଷ୍ଠେଣ ।୧୧।
ଅତି ବିସ୍ତାର ମହୀଭାର । ଯେଣୁ ବହିଲ ପୃଷ୍ଠପର[1] ।୧୨।
ଫଳିଛି ଗୋଟା ଗୋଟା ହୋଇ । ତେଣୁ ତୋ ପୃଷ୍ଠ ଆଣ୍ଠ ହୋଇ ।୧୩।
ଏହେଣ୍ଡେ କମଠ ମୂରତି । ଧରି ଯେ ପୃଷ୍ଠେ ଧର କ୍ଷିତି ।୧୪।
ହେ ହରେ ଜଗତ ଈଶ୍ୱର । ଜୟଯୁକ୍ତ ହୋଉ[2] ତୁମ୍ଭର ।୧୫।

**ଗୀତ -**

*ବସତି ଦଶନଶିଖରେ ଧରଣୀ ତବ ଲଗ୍ନା ।*
*ଶଶିନି କଳଙ୍କକଳେବ ନିମଗ୍ନା ।*
*କେଶବ ! ଧୃତଶୂକରରୂପ ! ଜୟ ଜଗଦୀଶ ! ହରେ ।୩।*

ଅର୍ଥ -

କେଶବ ବରେହା ମୂରତି । ଧରି ଦନ୍ତାଗ୍ରେ[3] ଧର କ୍ଷିତି ।୧୬।
କାହିଁ କାହାର ପ୍ରାନ୍ତେ[4] ହୋଇ । ଦନ୍ତାଗ୍ରେ ଧରଣୀ ଦିଶଇ ।୧୭।
ଚନ୍ଦ୍ରରେ କଳଙ୍କ ଯେସନ । ତୋ ଦନ୍ତେ ପୃଥିବୀ ତେସନ ।୧୮।
ତୋ ଦନ୍ତ ଚନ୍ଦ୍ରମା ହୋଇଲା । ପୃଥିବୀ କଳଙ୍କ ଶୋହିଲା ।୧୯।
ଏହେଣ୍ଡେ[5] ଶୂକର ମୂରତି । ଦନ୍ତେ ଧଇଲେ ଯେତି[6] କ୍ଷିତି ।୨୦।
ହେ ହରେ ଜଗତ ଈଶ୍ୱର । ଜୟଯୁକ୍ତ ହୋଉ[7] ତୁମ୍ଭର ।୨୧।

---

୧. କ. ଟାର
୨. ଖ. ହେଉ
୩. ଖ. ଦନ୍ତରେ
୪. ଖ. ପ୍ରିୟେ
୫. ଖ. ଏହେନ୍ତେ
୬. ଖ. ଧରିଲଟି ଯେ
୭. ଖ. ହେଉ

ଗୀତ -

*ତବ କରକମଳବରେ ନଖମଦ୍ଭୁତଶୃଙ୍ଗମ୍ ।*
*ଦଳିତହିରଣ୍ୟକଶିପୁତନୁଭୃଙ୍ଗମ୍ ।*
*କେଶବ ! ଧୃତନରହରିରୂପ ! ଜୟ ଜଗଦୀଶ ହରେ ! ।୪।*

ଅର୍ଥ -

| | | |
|---|---|---|
| କେଶବ ରୂପେ ନରହରି । | ହିରଣ୍ୟ କଶିପୁ[1] ବିଦାରି | ।୨୨। |
| ତୋ କର କମଳର[2] ନଖ[3] । | ଅଦ୍ଭୁତ ଦିଶେ ମହାତୀକ୍ଷ୍ଣ | ।୨୩। |
| ସେ ନଖମାନଙ୍କରେ କରି । | ହିରଣ୍ୟ କଶିପୁ[4] ବିଦାରି | ।୨୪। |
| ତୋ କର କମଳ ପରାୟେ । | ଭ୍ରମର ହିରଣ୍ୟର କାୟେ[5] | ।୨୫। |
| ଏହେଣ୍ଣେ ଯେଟି ନରହରି । | ହିରଣ୍ୟ[6] କଶିପୁ[7] ବିଦାରି | ।୨୬। |
| ହେ ହରେ ଜଗତ ଈଶ୍ୱର । | ଜୟଯୁକ୍ତ ହୋଉ ତୁମ୍ଭର | ।୨୭। |

ଗୀତ -

*ଛଳୟସି ବିକ୍ରମଣେ ବଳିମଦ୍ଭୁତବାମନ !*
*ପଦନଖନୀରଜନିତଜନପାବନ !*
*କେଶବ ! ଧୃତବାମନରୂପ ! ଜୟ ଜଗଦୀଶ ! ହରେ ।୫।*

ଅର୍ଥ -

| | | |
|---|---|---|
| କେଶବ ଅଦ୍ଭୁତ ବାମନ । | ରୂପେ ବଳିଙ୍କି[8] ମାଗ ଦାନ | ।୨୮। |
| ପରାକ୍ରମରେ[9] ତାଙ୍କୁ[10] ହେଳେ । | ଚାପିଣ ରଖିଲ ପାତାଳେ | ।୨୯। |
| ପାଦରେ ଥାନ୍ତା[11] ଯେଟି ନଖ[12] । | ତହିଁର ଜଳ ମହାସୁଖ | ।୩୦। |
| ସେ ଜଳ ସ୍ନାନେ ତ୍ରିଭୁବନ । | ପବିତ୍ର କଲ ଭଗବାନ | ।୩୧। |

---

୧. କ. କସ୍ୟପୁ
୨. ଖ. କମଳରେ
୩. କ. ଲକ୍ଷ
୪. କ. କସ୍ୟପୁ
୫. କ. ପାୟେ
୬. ଚ. ହିରନ୍ୟ
୭. କ. ବସ୍ୟପୁ
୮. ଖ. ବଳିଙ୍କି
୯. କ. ପରାକର୍ମ
୧୦. କ. ତାଙ୍କୁ
୧୧. ଖ. ଧାଗ
୧୨. କ. ଲକ୍ଷ

ଏହେର୍ଣ୍ଣେ ଅଦ୍ଭୁତ ବାମନ । ବଳିକି ମାଗିଲ ଯେ ଦାନ ।୩୨।
ହେ ହରେ ଜଗତ ଈଶ୍ୱର । ଜୟଯୁକ୍ତ ହୋଉ ତୁମ୍ଭର ।୩୩।

ଗୀତ -

***କ୍ଷତ୍ରିୟରୁଧିରମୟେ ଜଗଦପଗତପାପମ୍ ।***
***ସ୍ନପୟସି ପୟସି ଶମିତଭବତାପମ୍ ।***
***କେଶବ ! ଧୃତଭୃଗୁପତିରୂପ ! ଜୟ ଜଗଦୀଶ ! ହରେ ।୬।***

ଅର୍ଥ -

କେଶବ ଭୃଗୁପତି ରୂପେ । କ୍ଷତ୍ରିୟମାନଙ୍କୁ ଦଳି[୧] କୋପେ ।୩୪।
ନିକ୍ଷତ୍ର କ୍ଷିତି[୨] ଯେଣୁ କଲ । ରକତେ ନଦୀ ବୁହାଇଲ ।୩୫।
ତେଣେ ଜଗତଯାକ ସ୍ନାନ[୩] । କରି ଖଣ୍ଡିଲେ ପାପମାନ ।୩୬।
ଶାନ୍ତି କରାଇ ଭବତାପ । ଖଣ୍ଡିଲ[୪] ଭଗତଙ୍କ ପାପ ।୩୭।
ଏହେର୍ଣ୍ଣେ[୫] ଭୃଗୁପତି ରୂପେ । କ୍ଷେତ୍ରିଙ୍କି ଛେଦିଲ ଯେ କୋପେ ।୩୮।
ହେ ହରେ ଜଗତ ଈଶ୍ୱର । ଜୟଯୁକ୍ତ ହୋଉ ତୁମ୍ଭର ।୩୯।

ଗୀତ -

***ବିତରସି ଦିକ୍ଷୁ ରଣେ ଦିକ୍ପତିକମନୀୟମ୍ ।***
***ଦଶମୁଖମୌଳିବଳିଂ ରମଣୀୟମ୍ ।***
***କେଶବ ! ଧୃତରଘୁପତିରୂପ ! ଜୟ ଜଗଦୀଶ ! ହରେ ।୭।***

କେଶବ ଶ୍ରୀରାମ ରୂପେଣ । ଅବତରିଲ ସଂଗ୍ରାମେଣ[୬] ।୪୦।
ଦଶବଦନ ଯେ ରାବଣ । ଦଶ ମଉଳି ତାର ହାଣ ।୪୧।
ଦଶ ଦିଗକୁ ବଳି ଦେଲ । ଦିଗପାଳଙ୍କୁ ତୋଷ କଲ ।୪୨।
ଏହେର୍ଣ୍ଣେ ଶ୍ରୀରାମ ରୂପେଣ । ଦଶବଦନଙ୍କୁ ଯେ ହାଣ ।୪୩।
ହେ ହରେ ଜଗତ ଈଶ୍ୱର । ଜୟଯୁକ୍ତ ହୋଉ ତୁମ୍ଭର ।୪୪।

---

୧. କ. ବଳି
୨. କ. କ୍ଷତ୍ର
୩. ଖ. ସ୍ନାନ
୪. କ. ଖଣ୍ଡିଲେ
୫. ଖ. ଏହେନ୍ତେ
୬. କ. ସାଂଗ୍ରାମେଣ

ଗୀତ -

*ବହସି ବପୁଷି ବିଶଦେ ବସନଂ ଜଳଦାଭମ୍ ।*
*ହଳହତିଭୀତିମିଳିତଯମୁନାଭମ୍ ।*
*କେଶବ ! ଧୃତହଳଧରରୂପ ! ଜୟ ଜଗଦୀଶ ! ହରେ ।୮।*

ଅର୍ଥ -

| | | |
|---|---|---|
| କେଶବ ହଳଧର ରୂପେ । | ହଳ ମୂଷଳ ଧରି କୋପେ | ।୪୫। |
| ହଳେ କରି ତାଡ଼ିଲ ଯେଣୁ । | ଯମୁନା ଭଏ ପାଏ[1] ତେଣୁ | ।୪୬। |
| କଟିରେ ମିଳିବାରୁ ଆସି । | ବସନ ଶ୍ୟାମବର୍ଣ୍ଣ ଦିଶି | ।୪୭। |
| ଧବଳ ବର୍ଣ୍ଣକୁ ତୁମ୍ଭର । | ସୁନ୍ଦର ଦିଶେ ନୀଳାମ୍ବର[2] | ।୪୮। |
| ଏହେର୍ଣ୍ଣେ ହଳଧର ଯେ ବା । | ହଳ ମୂଷଳ କରେ ଶୋଭା | ।୪୯। |
| ହେ ହରେ ଜଗତ ଈଶ୍ୱର । | ଜୟଯୁକ୍ତ ହୋଉ ତୁମ୍ଭର | ।୫୦। |

ଗୀତ -

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍ ।
ସଦୟହୃଦୟଦର୍ଶିତପଶୁଘାତମ୍ ।
କେଶବ ! ଧୃତବୁଦ୍ଧଶରୀର ! ଜୟ ଜଗଦୀଶ ! ହରେ ।୯।

ଅର୍ଥ -

| | | |
|---|---|---|
| କେଶବ ବୁଦ୍ଧ ରୂପ ଧରି । | ବେଦ ବିଧିକି ନିନ୍ଦା କରି | ।୫୧। |
| ଯେଣୁ ନିନ୍ଦିଲ ଯାଗାମାନ । | ତାହା[3] କହିବା ଅର୍ଥ ଶୁଣ | ।୫୨। |
| ପଶୁମାନଙ୍କୁ କରି ବଧ[4] । | ଯାଗ ଲେଖିଲା ଯହୁଁ ବେଦ | ।୫୩। |
| ତେଣୁ ନିନ୍ଦିଲ ବେଦବିଧି । | ଯେଣୁ ତୋ ନାମ ଦୟାନିଧି | ।୫୪। |
| ଏହେର୍ଣ୍ଣେ ବୁଦ୍ଧରୂପ ଧରି । | ଯେ ବେଦବିଧି ନିନ୍ଦା କରି | ।୫୫। |
| ହେ ହରେ ଜଗତ ଈଶ୍ୱର । | ଜୟଯୁକ୍ତ ହୋଉ ତୁମ୍ଭର | ।୫୬। |

---

୧. ଖ. ଭୟେ ପାଇ
୨. ଖ. ଲୀଳାମ୍ବର
୩. ଖ. ତାହି
୪. ଖ. ବନ୍ଧ

ଗୀତ -

ମ୍ଲେଚ୍ଛନିବହନିଧନେ କଳୟସି କରବାଳମ୍ ।
ଧୂମକେତୁମିବ କିମପି କରାଳମ୍ ।
କେଶବ ! ଧୃତକଳ୍କିଶରୀର ! ଜୟ ଜଗଦୀଶ ! ହରେ ।୧୦।

ଅର୍ଥ -

| | | | |
|---|---|---|---|
| କେଶବ କଳଙ୍କି[୧] ରୂପେଣ | । | ମେଳକ୍ଷ ଲୋକମାନ ହାଣ | ।୫୭। |
| କରେ ଖଡ଼ଗ ଶୋଭାବନ | । | ଦିଶଇ ଧୂମକେତୁ[୨] ବର୍ଣ୍ଣ | ।୫୮। |
| ବିକଟ ମୂର୍ତ୍ତି[୩] ଅଛି ହୋଇ | । | ମେଳକ୍ଷ ଖାଇବି ବୋଲଇ | ।୫୯। |
| ଏହେର୍ନ୍ତେ କଳିଙ୍କି ରୂପେଣ | । | ଖଡ଼ଗ ହସ୍ତେ ଯେବି ଘେନ | ।୬୦। |
| ହେ ହରେ ଜଗତ ଈଶ୍ୱର | । | ଜୟଯୁକ୍ତ ହୋଉ ତୁମ୍ଭର | ।୬୧। |

ଗୀତ -

ଶ୍ରୀଜୟଦେବକବେରିଦମୁଦିତମୁଦାରମ୍ ।
ଶୃଣୁ ସୁଖଦଂ ଶୁଭଦଂ ଭବସାରମ୍ ।
କେଶବ ! ଧୃତଦଶବିଧରୂପ ! ଜୟ ଜଗଦୀଶ ! ହରେ ।୧୧।

ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଲେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ।।ଶ୍ଲୋକ-୫।।

ଅର୍ଥ[୪] -

| | | | |
|---|---|---|---|
| ଯେ ଦଶବିଧ[୫] ରୂପଧର | । | ସେ କୃଷ୍ଣ ପାଦେ ନମସ୍କାର | ।୫୯। |
| ଯେଉଁ ରୂପେଣ[୬] କଲ ଯିସ | । | ତା ହି କହିବା ଜଗଦୀଶ | ।୬୦। |
| ମୀନ ସ୍ୱରୂପ ଧରି ଜଳେ | । | ବେଦ ରଖିଲ ପ୍ରଳେ କାଳେ | ।୬୧। |

୧. ଖ. କଳିଙ୍କି
୨. କ. ଧୂମକେତୁ
୩. କ. ମୃତି
୪. କ. ଶ୍ଳୋକାର୍ଥ
୫. କ. ବିଧି
୬. ଖ. ରୂପରେ

କଚ୍ଛପ[୧] ରୂପ[୨] ଯେ ଧଇଲ । ଜଗତ ପୃଷ୍ଠରେ[୩] ବହିଲ ।୨୨।
ବରେହା[୪] ରୂପେ ଦନ୍ତାଗ୍ରରେ । ଆସମୁଦ୍ରାନ୍ତ ମହୀ ଧରେ ।୨୩।
ନୃସିଂହ ରୂପେଣ[୫] ହିରଣ୍ୟ । କଶିପୁ[୬] ତନୁ ବିଦାରଣ ।୨୪।
ବାମନ ରୂପ ଧରି ବଳେ । ବଳିକି ଚାପିଲ ପାତାଳେ ।୨୫।
ଯେ ପର୍ଶୁରାମ[୭] ରୂପଧର । କ୍ଷତ୍ରିୟମାନଙ୍କୁ କ୍ଷଏ[୮] କର ।୨୬।
ପୌଲସ୍ତି[୯] ନାତି ଯେ ରାବଣ । ରାମ ସ୍ୱରୂପେ ବଳି ହାଣ ।୨୭।
ଯେ ବଳରାମ ରୂପଧର । ହଳ ମୂଷଳ ଶୋହେ କର ।୨୮।
ବଉଦ ରୂପେ ଦୟା ବହି । ପଶୁ ମାରିବା ନିବୃତାଇ[୧୦] ।୨୯।
କଳଙ୍କି ରୂପେ ମ୍ଳେଛ ମାର । ଏମନ୍ତେ ଦଶବିଧ୍ ତୋର[୧୧] ।୩୦।
ଏ ଗୀତ ଅଟଇ କେମନ୍ତ । ବହୁତ ସୁଖ କରେ ଜାତ ।୩୧।
ଶୁଭ କଥା ହି ଦିଏ ଆର । ଭବ ସଂସାରକୁ ଏ ସାର ।୩୨।
ତୃତୀୟ[୧୨] ଗାଥା ହୁଏ ଶେଷ । ଯେ ଧ୍ରୁବ ବଚନ ପ୍ରକାଶ ।୩୩।
ସୁଜନ ଜନମାନେ ମୋର । ଅପ୍ରାଧ ମନରେ ନ ଧର ।୩୪।
ତୁମ୍ଭ ଚରଣେ ମୋର ଆଶ । ବୋଲେ ବଜରି ମୃତ୍ତ ଦାସ ।୩୫।

*ଇତି ଶ୍ରୀ ଅର୍ଥଗୋବିନ୍ଦେ[୧୩] ସରସକାବ୍ୟେ ମହାଗ୍ରନ୍ଥେ ଦଶଅବତାରବର୍ଣ୍ଣନେ*

*ମୃତ୍ତବଜରିଦାସେନ[୧୪] କୃତୌ ନାମ[୧୫]*

*ତୃତୀୟଅଧ୍ୟାୟଃ ।୩।*

---

୧. କ. କଚ୍ଛପ
୨. ଖ. ରୂପେ
୩. କ. ସୃଷ୍ଟିରେ
୪. ଖ. ବରାହ
୫. କ. ପୁଣି ହରିଯେ
୬. କ. କସ୍ୟପୁ
୭. କ. ପ୍ରଶୁରାମ
୮. ଖ. କ୍ଷୟ
୯. ଖ. ପୌଲସ୍ତ୍ୟ
୧୦. କ. ନିବର୍ତ୍ତାଇ
୧୧. ଖ. ଧର
୧୨. କ. ଦ୍ୱିତୀୟ
୧୩. ଖ. ଗୀତଗୋବିନ୍ଦ
୧୪. କ. ଦାସେ
୧୫. ଖ. କୃତୌ ତୃତୀୟ

# ଚତୁର୍ଥ ଅଧ୍ୟାୟ

[ରାଗଲକ୍ଷଣ - ଶ୍ୟାମା ସୁକେଶୀ ମଳୟଦ୍ରୁମାଣାଂ ମୃଦୁଲ୍ଲସତ୍ପଲ୍ଲବତଳ୍ପମଧ୍ୟେ ।
ଶ୍ରୁତେଃ ସ୍ୱରାଣାଂ ଦଧତୀ ବିଭାଗଂ ତନ୍ତ୍ରୀମୁଖୀ ଦକ୍ଷିଣଗୁର୍ଜ୍ଜରୀୟମ୍ ॥]

(ମଙ୍ଗଳଗୁର୍ଜ୍ଜରୀରାଗେଣ ଗୀୟତେ)

ଗୀତ -

*ଶ୍ରିତକମଳାକୁଚମଣ୍ଡଳ ! ଧୃତକୁଣ୍ଡଳ !*
*କଳିତଲଲିତବନମାଳ ! ଜୟ ଜୟ ଦେବ ହରେ ॥ ଧ୍ରୁବମ୍ ୧ ॥*

ଅର୍ଥ -

ସୁଜନେ ଶୁଣ ଅନ୍ୟ କଥା । ଯେ ଅର୍ଥ ଗୋବିନ୍ଦ ବେବସ୍ଥା[୧] ।୧।
ମଙ୍ଗଳଗୁର୍ଜ୍ଜରୀ ରାଗେଣ । ଗାଥାର ଅର୍ଥ ଏବେ ଶୁଣ ।୨।
ହେ ହରି ଜଗତ ଈଶ୍ୱର । ଏମନ୍ତ ମହିମା ତୁମ୍ଭର ।୩।
ଆଶ୍ରୟ କମଳା ଯୌବନ । କରି ରହିଲ[୨] ରାତ୍ର ଦିନ ।୪।
କୋଟିଏ ଯୁଗ ଗଲେ ନାଶ[୩] । ମୁରୁଛି ନ ପାରି[୪] ସେ ରସ ।୫।
ମକର ଆକୃତି[୫] କୁଣ୍ଡଳ । ଗଣ୍ଡେ ଲମ୍ବଇ ଝଳ ଝଳ ।୬।
ଲାବଣ୍ୟ[୬] ମନୋହର ତୋର । ହୃଦେ ଲମ୍ବଇ ବନମାଳ ।୭।

ଗୀତ -

*ଦିନମଣିମଣ୍ଡଳମଣ୍ଡନ ! ଭବଖଣ୍ଡନ !*
*ମୁନିଜନମାନସହଂସ ! ଜୟ ଜୟ ଦେବ ହରେ ॥୨॥*

---

୧. ଖ. ବେବସ୍ତା
୨. କ. ରହିଲା
୩. ଖ. ନାସ
୪. ଖ. ପାରୁ
୫. କ. ଆକୃତ
୬. କ. ଲାବନ୍ୟ

ଅର୍ଥ -

ତ୍ୱଁ[1] (୧) ପୁଣି କେମନ୍ତ ଯେ ଅଟ । ସୂର୍ଯ୍ୟମଣ୍ଡଳେ[2] ଶୋଭାଘଟ[3] ।୮।
ଭବ[4] ଯେ ସଂସାର ସାଗର । ଖଣ୍ଡ ତହିଁର ଉରାଭର ।୯।
ମୁନିମାନଙ୍କ ମନ ଯେଟି । ହୋଇଲା ସରୋବର[5] ସେଟି ।୧୦।
ସେ ସରୋବର ତୁ[6] ଯେ ହଂସ । ଆନନ୍ଦ ମନ୍ଦିରେ ତୋ ବାସ ।୧୧।

ଗୀତ -

***କାଳିୟବିଷଧରଗଞ୍ଜନ ! ଜନରଞ୍ଜନ !***
***ଯଦୁକୁଳନଳିନଦିନେଶ ! ଜୟ ଜୟ ଦେବ ହରେ ॥୩॥***

ଅର୍ଥ -

କାଳୀୟ ସର୍ପ ବିଷଧର[7] । ତାକୁ ଗଞ୍ଜିଣ କଲେ ଚୂର ।୧୨।
ଜଗତେ ଯେତେ ଜନମାନ । ରଞ୍ଜିଲ[8] ସବୁଙ୍କରି ମନ ।୧୩।
ଯେ ଯଦୁବଂଶ ପଦ୍ମବନ । ତୁ ସୂର୍ଯ୍ୟ ଅଟୁ[9] ଭଗବାନ ।୧୪।
ତୋ ଜାତ ବିନୁ ହୃଷୀକେଶ[10] । ଉଜଳ[11] ହୋଇଲା ସେ ବଂଶ[12] ।୧୫।

ଗୀତ -

***ମଧୁମୁରନରକବିନାଶନ ! ଗରୁଡ଼ାସନ !***
***ସୁରକୁଳକେଳିନିଦାନ ! ଜୟ ଜୟ ଦେବ ହରେ ॥୪॥***

ଅର୍ଥ-

ମଧୁମୁର ନାରକାସୁର । ଏ ବିଧି ମାଇଲ ଅସୁର ।୧୬।
ଗରୁଡ଼ ଆସନେ ବିଜୟେ[13] । ଆନନ୍ଦେ ପ୍ରଭୁ ଦେବରାଏ[14] ।୧୭।
ସୁର ଯେ ଦେବତାଙ୍କୁ କହି । ତାହାଙ୍କ କେଳି କର୍ତ୍ତା ତୁହି ।୧୮।

---

| | | | | | | | | |
|---|---|---|---|---|---|---|---|---|
| ୧. | କ. ଖ. | ତ୍ୱ | ୬. | ଖ. | ତୁମ୍ଭେ | ୧୦. | କ. | ହୃଷିକେଶ |
| ୨. | ଖ. | ମଣ୍ଡଳୁ | ୭. | ଚ. | ବିସଧର | ୧୧. | କ. | ଉଯଳ |
| ୩. | ଖ. | ଶୋଭାହାଟ | ୮. | କ. | ରଞ୍ଜିଲେ | ୧୨. | କ. | ବଂସ |
| ୪. | ଚ. | ଭାବ | | ଖ. | ରଞ୍ଜାଇ | ୧୩. | କ. | ବିଯଏ |
| ୫. | ଚ. | ସରୋବରେ | ୯. | ଖ. | ଅଟ | ୧୪. | ଖ. | ଦେବରାଏ |

ଗୀତ -

*ଅମଳକମଳଦଳଲୋଚନ ! ଭବମୋଚନ !*
*ତ୍ରିଭୁବନଭବନନିଧାନ ! ଜୟ ଜୟ ଦେବ ହରେ ॥୫॥*

ଅର୍ଥ-

ନିର୍ମଳ ପଦ୍ମଦଳ[୧] କି ସେ । ଲୋଚନ ବେନି[୨] ଶୋଭା ଦିଶେ ।୧୯।
ଭବ ଯେ ସଂସାରକୁ କହି । ଏଥର ଭୟ ଫେଡ଼ ତୁହି ।୨୦।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି[୩] । ଭୁବନେ ନିଧି ବୋଲି ଚିହ୍ନି[୪] ।୨୧।

ଗୀତ -

*ଜନକସୁତାକୃତଭୂଷଣ ! ଜିତଦୂଷଣ !*
*ସମରଶମିତଦଶକଣ୍ଠ ! ଜୟ ଜୟ ଦେବ ହରେ ॥୬॥*

ଅର୍ଥ -

ଜନକନନ୍ଦିନୀ ଯେ ସୀତା[୫] । ସେ ତୋତେ ଭୂଷଣ ଦିଶନ୍ତା[୬] ।୨୨।
ଅସୁର ନାମ ତା ଦୂଷଣ[୭] । ପରାକ୍ରମରେ[୮] ତାକୁ ଜିଣ[୯] ।୨୩।
ସଂଗ୍ରାମ କରି ଦଶ ଶିର[୧୦] । କନ୍ଧରୁ ଉତାରିଲ[୧୧] ତାର ।୨୪।

ଗୀତ-

**ଅଭିନବଜଳଧରସୁନ୍ଦର ! ଧୃତମନ୍ଦର !**
**ଶ୍ରୀମୁଖଚନ୍ଦ୍ରଚକୋର ! ଜୟ ଜୟ ଦେବ ହରେ ॥୭॥**

ଅର୍ଥ -

ନବ ଜଳଦ ମେଘ ପ୍ରାୟେ । ସୁନ୍ଦର ଦିଶଇ ତୋ କାୟେ ।୨୫।
ମନ୍ଦର ବାମ କରେ ଧରି । ରଖିଲ ଗୋପପୁର ଶିରୀ[୧୨] ।୨୬।
ଲକ୍ଷ୍ମୀର ଚନ୍ଦ୍ର ବଦନରେ । ଚକୋର ପ୍ରାଏ ତ[୧୩] ବିହରେ ।୨୭।

---

୧. କ. ବନ
୨. କ. ବେନି
୩. କ. ତିନୀ
୪. ଖ. ଚିହ୍ନି
୫. କ. ସିତ୍ୟା
୬. ଖ. ଦିଶତା
୭. କ. ଦୁସଣ
୮. କ. ପରାକ୍ରମେ
୯. କ. ଯିଣ
୧୦. କ. ଦସସିର
୧୧. ଖ. ଉତ୍ତାରିଲ
୧୨. କ. ସରି
୧୩. ଖ. ପ୍ରାସ୍ୱେକ

ଭଣିତା -

*ଶ୍ରୀ ଜୟଦେବଭଣିତମିଦମ୍ । କୁରୁତେ ମୁଦମ୍ ।*
*ମଙ୍ଗଳମୁଜ୍ଜ୍ୱଳଗୀତମ୍ । ଜୟ ଜୟ ଦେବ ହରେ ॥୮॥*

ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ -
କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ ।
ବ୍ୟକ୍ତାନୁରାଗମିବ ଖେଳଦନଙ୍ଗଖେଦ-
ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂ ବଃ ॥ ଶ୍ଳୋକ-୬ ॥

ଅର୍ଥ[୧] -

କମଳା ବିପୁଳ ଯୌବନ । ତୋ କରିବାରେ ଆଲିଙ୍ଗନ ।୨୮।
କାଶ୍ମୀର[୨] କୁଙ୍କୁମକୁ କହି । ଦ୍ୱ ହୃଦେ ଫୁଟି[୩] ବିକାଶଇ ।୨୯।
ଏମନ୍ତ ହୋଇଛି ବିଚାରି । ହରିଦ୍ରା[୪] ସଞ୍ଚା[୫] ଦେଖିକରି ।୩୦।
ମଧୁସୂଦନ[୬] ଯେ ଶ୍ରୀକୃଷ୍ଣ । ଦେଖାଇ[୭] ଅଛି ସ୍ୱେଦଚିହ୍ନ ।୩୧।
ଖେଳନ୍ତା[୮] କାମଦେବ ତାଙ୍କୁ[୯] । ଜାତ ହୋଇଲା ଝାଳପଙ୍କୁ[୧୦] ।୩୨।
ତେଣୁ ପୂରିତ ବକ୍ଷସ୍ଥଳ । କୁଙ୍କୁମ ଦିଶଇ ଉଜ୍ଜ୍ୱଳ[୧୧] ।୩୩।
ଏମନ୍ତ ହୃଦୟ ଯାହାର[୧୨] । ସେ ପ୍ରିୟ ବଢ଼ାନ୍ତୁ[୧୩] ତୁମ୍ଭର ।୩୪।

ବସନ୍ତେ ବାସନ୍ତୀକୁସୁମସୁକୁମାରୈରବୟବୈ-
ର୍ଭ୍ରମନ୍ତୀଂ କାନ୍ତାରେ ବହୁବିହିତକୃଷ୍ଣାନୁସରଣାମ୍ ।
ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଳତୟା
ବଳଦ୍‌ବାଧାଂ ରାଧାଂ ସରସମିଦମୂଚେ ସହଚରୀ ॥ଶ୍ଳୋକ-୭॥

---

୧. କ. ଶ୍ଳୋକାର୍ଥ
୨. କ. କାସ୍ମିର
ଖ. କାଶ୍ମିର
୩. କ. ଫୁଟୀ
୪. ଖ. ହାରିଦ୍ର
୫. ଖ. ସଙ୍ଗ
୬. କ. ମଧୁସୋଦନ
୭. ଖ. ଦେଖାଉ
୮. ଖ. ଖେଳଇ
୯. ଖ. ତହୁଁ
୧୦. ଖ. ରାଗ ଯହୁଁ
୧୧. କ. ଉସ୍ୱଳ
୧୨. ଖ. ତୁମ୍ଭର
୧୩. ଖ. ବଢ଼ାଉ

ଅର୍ଥ[୧] -

| | | | |
|---|---|---|---|
| ଏଥି ଉତ୍ତାରେ ଆନ କଥା | । | ସୁଜନେ ଶୁଣିମା[୨] ବେବସ୍ଥା[୩] | ।୩୫। |
| ରାଧିକା ଆଗେ ଦୂତି[୪] କହେ | । | ଭୋ ସଖି[୫] ବସନ୍ତ ସମୟେ | ।୩୬। |
| ମାଧବୀ ପୁଷ୍ପ[୬] ପ୍ରାଏ[୭] ତୋର | । | ତନୁ ଅଟଇ ସୁକୁମାର | ।୩୭। |
| ଦୃଗମ[୮] ଅରନ୍ୟରେ[୯] ପଶି[୧୦] | । | ଭ୍ରମୁଛୁ କି କାର୍ଯ୍ୟେ ସୁକେଶୀ[୧୧] | ।୩୮। |
| ବାଜିଣ[୧୨] ଖୁଞ୍ଚା[୧୩] କଣ୍ଟା ତୋର | । | ଅଙ୍ଗରୁ ରୋଧିର ବାହାର | ।୩୯। |
| ବହୁତ କରି[୧୪] ସୁମରଣ | । | କୃଷ୍ଣଙ୍କୁ କରୁ କି କାରଣ | ।୪୦। |
| ତାହି ମୁଁ କହଇଁ ଥୋକାଏ | । | ଏମନ୍ତ ନୋହଇ ନା ସହେ | ।୪୧। |
| ମନ୍ଦ ଯେ କନ୍ଦର୍ପ ଅଟଇ | । | ତା ଜ୍ୱରେ ପୀଡ଼ା[୧୫] ଅଛୁ ପାଇ[୧୬] | ।୪୨। |
| ତେଣୁ ଆକୁଳ ହୋଇଁ ଚିତ୍ତେ[୧୭] | । | କୃଷ୍ଣଙ୍କୁ ଲୋଡୁଛୁ ନିରତେ | ।୪୩। |
| ସେ କୃଷ୍ଣ ଏହି ବୃନ୍ଦାବନେ | । | ସଙ୍ଗତେ ଛନ୍ତି ଗୋପୀମାନେ[୧୮] | ।୪୪। |
| ଏକାନ୍ତେ କ୍ରୀଡ଼ା[୧୯] କରୁଅଛି | । | ତୋ କଥା ମନରେ କାହିଁଛି | ।୪୫। |
| ତୁ ସିନା ଲୋଡୁଅଛୁ ତାକୁ | । | ସେ ତୁଣ୍ଡେ ନ ବସାଇ ତୁକୁ | ।୪୬। |
| ଦୂତିକା[୨୦] କହେ ରାଧା ପାଶ[୨୧] | । | ଶ୍ରୀକୃଷ୍ଣ ଗୋପୀ[୨୨] ସଙ୍ଗେ ରସ[୨୩] | ।୪୭। |
| ସୁଜନେ[୨୪] ଏକ ମନେ ଶୁଣ | । | ଗୀତଗୋବିନ୍ଦ ଅର୍ଥମାନ | ।୪୮। |

---

୧. କ. ଶ୍ଳୋକାର୍ଥ
୨. କ. ସୁଣିମା
୩. ଖ. ବେବସ୍ତା
୪. କ. ଦୁତୀ
୫. କ. ସଖୀ
୬. କ. ପୁଷ୍ପ
୭. ଖ. ପ୍ରାୟେ
୮. ଖ. ଦୁର୍ଗମ
୯. ଖ. ଅରଣ୍ୟରେ
୧୦. କ. ପସି
୧୧. କ. ସୁକେସି
୧୨. କ. ବାଯିଣ
୧୩. କ. ଖୁଞ୍ଚ
୧୪. ଖ. କରିଂ
୧୫. କ. ପିଡ଼ା
୧୬. କ. ପାଇଁ
୧୭. କ. ଚିତେ
୧୮. କ. ଗୋପିମାନେ
୧୯. କ. କ୍ରିଡ଼ା
୨୦. କ. ଦୁତିକା
୨୧. କ. ପାସ
୨୨. କ. ଗୋପି
୨୩. କ. ରାସ
୨୪. କ. ସୁଯନେ

ସେ[୧] ଗୀତ[୨] ଅଟଇ କେମନ୍ତ । ହରଷ[୩] କଥା ମନେ ଯୁକ୍ତ ।୪୯।
ନିରତେ ମଙ୍ଗଳ କରଇ । ଉଜଳ[୪] ଦିନୁ ଦିନ ହୋଇ ।୫୦।
ହୃଦସ୍ଥ କରଇ ନିର୍ମଳ । ଯେ ବାଞ୍ଛା ଦିଅଇ ସେ ଫଳ ।୫୧।
ଧ୍ରୁବ[୫] ବଚନେ[୬] ଏ ପ୍ରକାଶ । ଚତୁର୍ଥ[୭] ଗାଥା ହୋଏ ଶେଷ[୮] ।୫୨।
ମୂର୍ତ୍ତ[୯] ବଜରି[୧୦] ଦାସ ହରି । ଚରଣେ ଶରଣ ଫୁକାରି ।୫୩।

*ଇତି ଶ୍ରୀ ଅର୍ଥ[୧୧] ଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ମହିମାବର୍ଣ୍ଣନେ*
*ମୂର୍ତ୍ତବଜରି[୧୨] ଦାସେନ କୃତୌ[୧୩]*
*ଚତୁର୍ଥୋଽଧ୍ୟାୟଃ ।*

---

୧. ଖ. ଏ
୨. କ. ଗିତ
୩. କ. ହରସ
୪. କ. ଉଯଳ
ଖ. ଉଜନ
୫. କ. ଧ୍ରୁବ
୬. ଖ. ବଚନ
୭. ଖ. ତୃତୀୟ
୮. କ. ସେସ
୯. କ. ମୁର୍ତ୍ତ
୧୦. କ. ବଯରି
୧୧. ଖ. ଗୀତ'
୧୨. ଖ. ସରସ କାବ୍ୟ ମୁର୍ତ୍ତ ବଜରି ଦାସେନ
୧୩. କ. କୃତୌ ନାମ

# ପଞ୍ଚମ ଅଧ୍ୟାୟ

[ରାଗ ଲକ୍ଷଣ - ଶିଖଣ୍ଡବର୍ହୋଚ୍ଚୟବଦ୍ଧଚୂଡ଼ଃ ପୁଷ୍ଣନ୍ ପିକଂ ଚୂତନବାଙ୍କୁରେଣ ।
ଭ୍ରମନ୍ମୁଦା଼ରାମମନଙ୍ଗମୂର୍ତ୍ତି ର୍ମତୋ ମତଙ୍ଗସ୍ୟ ବସନ୍ତରାଗଃ ॥]

(ବସନ୍ତରାଗେଣ ଗୀୟତେ)

*ଲଳିତଲବଙ୍ଗଲତାପରିଶୀଳନକୋମଳମଳୟସମୀରେ ।*
*ମଧୁକରନିକରକରମ୍ବିତକୋକିଳକୂଜିତକୁଞ୍ଜକୁଟୀରେ ।*
*ବିହରତି ହରିରିହ ସରସବସନ୍ତେ ।*
*ନୃତ୍ୟତି ଯୁବତିଜନେନ ସମଂ ସଖୀ ବିରହିଜନସ୍ୟ ଦୁରନ୍ତେ ॥ ଧ୍ରୁବମ୍-୧॥*

ଅର୍ଥ -

ସୁଜନେ ଶୁଣ ଆନ[୧] ବାଣୀ । ଯେ ଅର୍ଥ ଗୋବିନ୍ଦ କାହାଣୀ[୨] ।୧।
ଧ୍ରୁବ ବଚନେ ପଦ୍ଧୁଁ ପଦ[୩] । ସଂସାର ବିଷୟକୁ ଗଦ[୪] ।୨।
ବସନ୍ତ ରାଗେଣ ଗୀୟତେ[୫] । ପଞ୍ଚମ[୬] ଗାଥାର ଯେ ଅର୍ଥେ ।୩।
ରାଧାକୁ କହୁଅଛି ସଖୀ[୭] । ଶୁଣ ଶରଦଚନ୍ଦ୍ରମୁଖୀ[୮] ।୪।
ତୋତେ ଛାଡ଼ିଣ କୃଷ୍ଣ ଗଲା । ଗୋପୀଙ୍କ ସଙ୍ଗେ କ୍ରୀଡ଼ା[୯] କଲା ।୫।
କେମନ୍ତ ଗୋପୀ କୃଷ୍ଣ କେଳି[୧୦] । ତୋ ଆଗେ କହିବା[୧୧] ବିରୋଳି ।୬।

---

୧. ଖ. ଅନ୍ୟ
୨. କ. କାହାଣି
୩. ଖ. ପଦ୍ଧୁପଦ
୪. ଖ. ବିଷବୁ ଏ ଗଦ
୫. କ. ଗିୟତେ
୬. କ. ଚତୁଥ, ଖ. ଚତୁର୍ଥ
୭. କ. ସଖି
୮. କ. ମୁଖି
୯. କ. କ୍ରିଡ଼ା
୧୦. କ. କେଳୀ
୧୧. ଖ. କହିବି

ସରସ ବସନ୍ତ ସମୟେ । ବିହରି ଛନ୍ତି ଦେବରାୟେ ।୭।
ଯୁବତୀ ଜନମାନେ[1] ସଙ୍ଗେ । ନୃତ୍ୟ କରନ୍ତି ନାନାରଙ୍ଗେ ।୮।
ହରି ତାହାଙ୍କ ସଙ୍ଗେ ମିଳି । କରୁଛି ନାନା ରଙ୍ଗେ କେଳି ।୯।
ଯହିଁ ବିହରେ ଗୋପୀ କହ୍ନୁ[2] । ନାହିଁ ଟେହିଁକି ସମ ଆନ ।୧୦।
ବିରହୀ ଜନଙ୍କୁ ଦୁର୍ଗତ । ହୋଇଛି ଏ ଋତୁ ବସନ୍ତ ।୧୧।
ପୁଣି କେମନ୍ତ[3] ହୋଇଅଛି । ସେ ସ୍ଥାନଗୋଟି ଗୋ ମୃଗାକ୍ଷି[4] ।୧୨।
ଲଳିତ ସୁନ୍ଦରକୁ କହି । ଲବଙ୍ଗ ଲତାମାନେ ସେହିଁ[5] ।୧୩।
ତଥିରେ ଲାଗି ଆସିବାରେ । କୋମଳ ହୋଇଛି ବେଢାରେ ।୧୪।
ମଳୟ ପବନ ଗୋ ସହେ । ତେଣୁ ସେ ମନ୍ଦ ମନ୍ଦ ବହେ ।୧୫।
ଭ୍ରମରମାନଙ୍କର ନାଦ । କୋକିଳମାନଙ୍କ ଶବଦ[6] ।୧୬।
କୁଞ୍ଜ କୁଟୀରେ କୁଳାହୁଳ[7] । ମିଶିଣ ଶୁଭଇ ଚହଳ[8] ।୧୭।

ଗୀତ -

*ଉନ୍ମଦମଦନମନୋରଥପଥିକବଧୂଜନଜନିତବିଳାପେ ।*
*ଅଳିକୁଳସଂକୁଳକୁସୁମସମୂହନିରାକୁଳବକୁଳକଳାପେ ॥୨॥*

ଅର୍ଥ -

ପ୍ରବାସୀ ବଧୂଁ[9] ଜନମାନେ । ତାହାଙ୍କୁ ଉତ୍କଣ୍ଠା ମଦନେ ।୧୮।
କାନ୍ତ ବିଚ୍ଛେଦ ତାର ଯେଣୁ । ରୋଦନ କରେ ବାଳୀ ତେଣୁ ।୧୯।
ଅଳି ଯେ ଭ୍ରମରକୁ କହି । ତାହାଙ୍କୁ ରୁଣ୍ଡେ କରି ସହୀ[10] ।୨୦।
ଆନନ୍ଦ ହୋନ୍ତି ପୁଷ୍ପମାନେ[11] । ଯହିଁ ସେ ବକୁଳ କାନନେ ।୨୧।

---

୧. କ. ଯନମାନେ
୨. ଖ. କାନ୍ୟ
୩. ଖ. କେମନ୍ତ
୪. ଙ. ମୃଗାକ୍ଷି
୫. ଙ. ସହି
୬. ଚ. ଶବଦ
୭. ଖ. କୋଳାହଳ
୮. କ. ଗଭିର
୯. କ. ବନ୍ଧ
୧୦. କ. ମୁହିଁ
୧୧. ଖ. ଗୁମ୍ଫାମାନେ

ଗୀତ -

*ମୃଗମଦସୌରଭରଭସବଶଂବଦନବଦଳମାଳତମାଳେ ।*
*ଯୁବଜନହୃଦୟବିଦାରଣମନସିଜନଖରୁଚିକିଂଶୁକଜାଳେ ॥୩॥*

ଅର୍ଥ -

କସ୍ତୁରୀ ଗନ୍ଧ ପ୍ରାଏ ଅତି । ତମାଳ ଦଳ ପ୍ରକଟନ୍ତି ।୨୨।
ସ୍ୱଭାବେ[1] ନବୀନ କୋମଳ । ଲତାଏ ଦିଶନ୍ତି ନିର୍ମଳ ।୨୩।
ଯୁବା ଯୁବତୀମାନେ ଯେତେ । ହୃଦୟ ବିଦାରିବା ଅର୍ଥେ ।୨୪।
ମଦନ ନଖକୃତି[2] କି ସେ । ପଳାଶ ପୁଷ୍ପମାନେ କି ସେ[3] ।୨୫।

ଗୀତ -

*ମଦନମହୀପତିକନକଦଣ୍ଡରୁଚିକେଶରକୁସୁମବିକାଶେ ।*
*ମିଳିତଶିଳୀମୁଖପାଟଳିପଟଳୀକୃତସ୍ମରତୂଣବିଳାସେ ॥୪॥*

ଅର୍ଥ -

ବସନ୍ତ କାଳ[4] ଦେଖି ସହେ । ସାଜିଲା ମନୁମଥ ରାଏ[5] ।୨୬।
କନକ ଦଣ୍ଡ ପ୍ରାଏ ତାର । କେଶର[6] କୁସୁମ ସୁନ୍ଦର ।୨୭।
କେଶର ପୁଷ୍ପ ବୋଲି ଯାହା । ଅର୍ଥରେ ନାଗେଶ୍ୱର ତାହା ।୨୮।
ଶ୍ରୀମୁଖ[7] ଭ୍ରମର ଯେ ମାନେ । ପାଟଳି[8] ପୁଷ୍ପ ସନ୍ନିଧାନେ ।୨୯।
ଉଡ଼ି ବସନ୍ତେ ମତ୍ତଭରେ । ଏମନ୍ତ ଦିଶଇ ବିଚାରେ ।୩୦।
ସ୍ମର ଯେ ମନୁମଥ[9] ବୀର । ସେ କି ସାଜିଛି ଧନୁଶର ।୩୧।

ଗୀତ -

*ବିଗଳିତଲଜ୍ଜିତଜଗଦବଲୋକନତରୁଣକରୁଣକୃତହାସେ ।*
*ବିରହିନିକୃନ୍ତନକୁନ୍ତମୁଖାକୃତିକେତକିଦନ୍ତୁରିତାଶେ ॥୫॥*

---

୧. ଖ. ସଭାବେ
୨. ଖ. ନଖାକୃତି
୩. ଖ. ଦିଶେ
୪. ଖ. ଗତୁ
୫. ଖ. ରାୟେ
୬. କ. କେସର
୭. ଖ. ଶ୍ରୀମୁଖ
୮. କ. ପାଟଳୀ
୯. ଖ. ମନମଥ

ଅର୍ଥ -

ଲଜ୍ଜା[1] ଛାଡ଼ିଣ ଜନମାନେ । ହରଷ[2] ହୋଇଲେ ମଦନେ ।୩୨।
ତରୁଣ ଯୁବତୀଙ୍କ ଚାହିଁ । ହସନ୍ତି ମନ୍ଦମନ୍ଦ ହୋଇ[3] ।୩୩।
ବିରହୀ ଛେଦିବା ନିମନ୍ତେ । ଦନ୍ତ ଆକୃତି କି ଏ କୁନ୍ତେ[4] ।୩୪।
ବସନ୍ତେ ଫୁଟିଲା କେତକୀ । ବିଚାରି ହୋଉଅଛି ଦେଖି ।୩୫।
ଦିଗବନ୍ଧୁଙ୍କ ମୁଖ ଚାହିଁ । ହସୁ ଏ ଥାନ୍ତି ସୁଖ ପାଇଁ ।୩୬।
କେତକୀ ଫୁଟିବାରୁ କରି । ଏମନ୍ତ ହୋଉଛି[5] ବିଚାରୀ ।୩୭।
ମଦନ ସାଜିଛି ତ[6] କୁନ୍ତେ । ବିରହୀ ଛେଦିବା ନିମନ୍ତେ ।୩୮।

ଗୀତ -

*ମାଧବିକାପରିମଳଲଳିତେ ନବମାଳିକଜାତିସୁଗନ୍ଧୌ ।*
*ମୁନିମନସାମପି ମୋହନକାରିଣି ତରୁଣାକାରଣବନ୍ଧୌ ॥୬॥*

ଅର୍ଥ -

ମାଧବୀ[7] ପରିମଳ ଯେତି । ଅର୍ଥରେ ସୁଗନ୍ଧିତ ସେତି ।୩୯।
ତେଣେ କରି ଲାବଣ୍ୟ[8] ହୋଇ । ଏ ପୁଷ୍ପଗୋଟି ଅଛି ଶୋହି[9] ।୪୦।
ନୂଆ ଫୁଟିଣ ପନ୍ତି ପନ୍ତି । ସୁନ୍ଦର ଦିଶଇ ମାଳତୀ[10] ।୪୧।
ଆବର ଜାତି[11] ପୁଷ୍ପମାନ । ଫୁଟି ସୁଗନ୍ଧ ବାସେ ବନ ।୪୨।
ଏ ଘେନି ମୁନିଜନ[12] ମନ[13] । ମୋହନ୍ତା[14] ହୋଇଛି ସେ ବନ ।୪୩।
ତରୁଣୀମାନଙ୍କୁ କେମନ୍ତ । ହକାରିବାକୁ ବନ୍ଧୁମତ ।୪୪।

---

୧. କ. ଲଯ୍ୟା
୨. ଖ. ହରଷେ
୩. ଖ. ହସୁଏ ଥାନ୍ତି ସୁଖ ପାଇଁ
୪. କ. ଦନ୍ତେ
ଖ. କୁନ୍ତେ
୫. ଖ. ହୋଇଛି
୬. ଖ. ତା
୭. କ. ମାଧବେ
୮. କ. ନାବନ୍ୟ
୯. ଖ. ସାହି
୧୦. ଖ. ମାଳତି
୧୧. କ. ଯାତି
୧୨. କ. ଯନ
୧୩. କ. ମାନ
୧୪. ଖ. ମୋହିତା

ଗୀତ -

*ମୃଗମଦସୌରଭରଭସବଶଂବଦନବଦଳମାଳତମାଳେ ।*
*ଯୁବଜନହୃଦୟବିଦାରଣମନସିଜନଖରୁଚିକିଂଶୁକଜାଳେ ॥୩॥*

ଅର୍ଥ -

| | | | |
|---|---|---|---|
| କସ୍ତୁରୀ ଗନ୍ଧ ପ୍ରାଏ ଅତି | । | ତମାଳ ଦଳ ପ୍ରକଟନ୍ତି | ।୨୨। |
| ସ୍ୱଭାବେଂ[1] ନବୀନ କୋମଳ | । | ଲତାଏ ଦିଶନ୍ତି ନିର୍ମଳ | ।୨୩। |
| ଯୁବା ଯୁବତୀମାନେ ଯେତେ | । | ହୃଦୟ ବିଦାରିବା ଅର୍ଥେ | ।୨୪। |
| ମଦନ ନଖକୃତି[2] କି ସେ | । | ପଳାଶ ପୁଷ୍ପମାନେ କି ସେ[3] | ।୨୫। |

ଗୀତ -

*ମଦନମହୀପତିକନକଦଣ୍ଡରୁଚିକେଶରକୁସୁମବିକାଶେ ।*
*ମିଳିତଶିଳୀମୁଖପାଟଳିପଟଳୀକୃତସ୍ମରତୁଣବିଳାସେ ॥୪॥*

ଅର୍ଥ -

| | | | |
|---|---|---|---|
| ବସନ୍ତ କାଳ[4] ଦେଖି ସହେ | । | ସାଜିଲା ମନ୍ମଥ ରାଏ[5] | ।୨୬। |
| କନକ ଦଣ୍ଡ ପ୍ରାଏ ତାର | । | କେଶର[6] କୁସୁମ ସୁନ୍ଦର | ।୨୭। |
| କେଶର ପୁଷ୍ପ ବୋଲି ଯାହା | । | ଅର୍ଥରେ ନାଗେଶ୍ୱର ତାହା | ।୨୮। |
| ଶ୍ରୀମୁଖ[7] ଭ୍ରମର ଯେ ମାନେ | । | ପାଟଳି[8] ପୁଷ୍ପ ସନ୍ନିଧାନେ | ।୨୯। |
| ଉଡ଼ି ବସନ୍ତେ ମତ୍ତଭରେ | । | ଏମନ୍ତ ଦିଶଇ ବିଚାରେ | ।୩୦। |
| ସ୍ମର ଯେ ମନ୍ମଥ[9] ବୀର | । | ସେ କି ସାଜିଛି ଧନୁଶର | ।୩୧। |

ଗୀତ -

*ବିଗଳିତଲଜ୍ଜିତଜଗଦବଲୋକନତରୁଣକରୁଣକୃତହାସେ ।*
*ବିରହିନିକୃନ୍ତନକୁନ୍ତମୁଖାକୃତିକେତକିଦନ୍ତୁରିତାଶେ ॥୫॥*

---

୧. ଖ. ସଭାବେ
୨. ଖ. ନଖାକୃତି
୩. ଖ. ଦିଶେ
୪. ଖ. ଋତୁ
୫. ଖ. ରାସ୍ୱେ
୬. କ. କେସର
୭. ଖ. ଶ୍ଲୀମୁଖ
୮. କ. ପାଟଳୀ
୯. ଖ. ମନମଥ

ଅର୍ଥ -

ଲଜ୍ଜା[୧] ଛାଡ଼ିଣ ଜନମାନେ । ହରଷ[୨] ହୋଇଲେ ମଦନେ ।୩୨।
ତରୁଣ ଯୁବତୀଙ୍କି ଚାହିଁ । ହସନ୍ତି ମନ୍ଦମନ୍ଦ ହୋଇ[୩] ।୩୩।
ବିରହୀ ଛେଦିବା ନିମନ୍ତେ । ଦନ୍ତ ଆକୃତି କି ଏ କୁନ୍ତେ[୪] ।୩୪।
ବସନ୍ତେ ଫୁଟିଲା କେତକୀ । ବିଚାରି ହୋଉଅଛି ଦେଖି ।୩୫।
ଦିଗବନ୍ଧୁଙ୍କ ମୁଖ ଚାହିଁ । ହସୁ ଏ ଥାନ୍ତି ସୁଖ ପାଇଁ ।୩୬।
କେତକୀ ଫୁଟିବାରୁ କରି । ଏମନ୍ତ ହୋଉଛି[୫] ବିଚାରି ।୩୭।
ମଦନ ସାଜିଛି ତ[୬] କୁନ୍ତେ । ବିରହୀ ଛେଦିବା ନିମନ୍ତେ ।୩୮।

ଗୀତ -

*ମାଧବିକାପରିମଳଲଳିତେ ନବମାଳିକଯାତିସୁଗନ୍ଧୌ ।*
*ମୁନିମନସାମପି ମୋହନକାରିଣି ତରୁଣାକାରଣବନ୍ଧୌ ॥୬॥*

ଅର୍ଥ -

ମାଧବୀ[୭] ପରିମଳ ଯେଟି । ଅର୍ଥରେ ସୁଗନ୍ଧିତ ସେଟି ।୩୯।
ତେଣେ କରି ଲାବଣ୍ୟ[୮] ହୋଇ । ଏ ପୁଷ୍ପଗୋଟି ଅଛି ଶୋହି[୯] ।୪୦।
ନୂଆ ଫୁଟିଣ ପନ୍ତି ପନ୍ତି । ସୁନ୍ଦର ଦିଶଇ ମାଳତୀ[୧୦] ।୪୧।
ଆବର ଜାତି[୧୧] ପୁଷ୍ପମାନ । ଫୁଟି ସୁଗନ୍ଧ ବାସେ ବନ ।୪୨।
ଏ ଘେନି ମୁନିଜନ[୧୨] ମନ[୧୩] । ମୋହନ୍ତା[୧୪] ହୋଇଛି ସେ ବନ ।୪୩।
ତରୁଣୀମାନଙ୍କୁ କେମନ୍ତ । ହକାରିବାକୁ ବନ୍ଧୁମତ ।୪୪।

---

୧. କ. ଲଯ୍ୟା
୨. ଖ. ହରଷେ
୩. ଖ. ହସ୍ତଏ ଥାନ୍ତି ସୁଖ ପାଇଁ
୪. କ. ଦନ୍ତେ
ଖ. କୁନ୍ତେ
୫. ଖ. ହୋଇଛି
୬. ଖ. ତା
୭. କ. ମାଧବେ
୮. କ. ନାବନ୍ୟ
୯. ଖ. ସାହି
୧୦. ଖ. ମାଳତି
୧୧. କ. ଯାତି
୧୨. କ. ଯନ
୧୩. ଖ. ମାନ
୧୪. ଖ. ମୋହିତା

ଗୀତ-

*ସ୍ଫୁରଦତିମୁକ୍ତଲତାପରିରମ୍ଭଣମୁକୁଳିତପୁଲକିତଚୁତେ ।*
*ବୃନ୍ଦାବନବିପିନେ ପରିସରପରିଗତଯମୁନାଜଳପୂତେ ।୭।।*

ଅର୍ଥ -

| | | | | |
|---|---|---|---|---|
| ସ୍ଫୁରନ୍ତା ଯେ ମାଧବୀ ଲତା | । | ସେହି ସେ ହୋଇଲା ବନିତା | ।୪୫। |
| କାନ୍ତ ପରାଏ ତୋର ପାଶେ | । | ରସାଳ ତରୁ ଶୋଭା ଦିଶେ | ।୪୬। |
| ଯେ ପରିରମ୍ଭ ଆଲିଙ୍ଗନ | । | ତେଣେ ହୋଇଛି ମହାଘନ | ।୪୭। |
| ଚୂତମାନଙ୍କ ଶିଖା[1]ପର | । | ବକୁଳ ଦିଶନ୍ତି ସୁନ୍ଦର | ।୪୮। |
| ପୁଣି କେମନ୍ତ ପ୍ରାୟେ ହୋଇ | । | ସେ ସ୍ଥାନ ଗୋଟା[2] ଅଛି ଶୋହି | ।୪୯। |
| ବୃନ୍ଦାବନ ବିପିନ ତୋଟା | । | ତହିଁର ନିକଟେ ବହନ୍ତା[3] | ।୫୦। |
| ଯମୁନା ନଦୀ ପରିମଳ | । | ପବିତ୍ର ସୁଶୀତଳ ଜଳ | ।୫୧। |

ଭଣିତା -

*ଶ୍ରୀଜୟଦେବଭଣିତମିଦମୁଦୟତି ହରିଚରଣସ୍ମୃତିସାରମ୍ ।*
*ସରସବସନ୍ତସମୟବନବର୍ଣ୍ଣନମନୁଗତମଦନବିକାରମ୍ ।।୮।।*

ଦରବିଦଳିତମଲ୍ଲୀବଲ୍ଲିଚଞ୍ଚତ୍‌ପରାଗ-
ପ୍ରକଟିତପଟବାସୈର୍ବାସୟନ୍ କାନନାନି ।
ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ
ପ୍ରସରଦସମବାଣପ୍ରାଣବଦ୍‌ଗନ୍ଧବାହଃ ।। ଶ୍ଳୋକ-୮ ।।

ଅର୍ଥ -

| | | | | |
|---|---|---|---|---|
| ଦୂତି[4] ବୋଲଇ ସଖୀ ଶୁଣ | । | ଇହ ବସନ୍ତ ସମୟେଣ | ।୫୨। |
| ଅଳପ ବିକଶି ଫୁଟନ୍ତା | । | ଆସୁ ଯେ ଅଛି ମଲ୍ଲୀଲତା | ।୫୩। |
| ଭ୍ରମରମାନେ ତଥିପର | । | ଆନନ୍ଦେ ବୁଲନ୍ତି କେଶର | ।୫୪। |
| ମଳୟ ପବନ ଲାଗିଣ | । | ତହୁଁ ଉଡ଼ଇ ରେଣୁମାନ | ।୫୫। |

୧. ଖ. ଶାଖା
୨. ଖ. ଗୋଟି
୩. କ. ବହନ୍ତା
୪. କ. ଦୂତୀ

କାନନ ବନକୁ ଯେ କହି । ତେଣୁ[1] ସେ ପ୍ରକଟି ବାସଇ ।୫୬।
କେତକୀ ଗନ୍ଧ ଘେନି ସୋହେ[2] । ଦକ୍ଷିଣା ପବନ ଗୋ ବହେ ।୫୭।
ଭୋ ସଖୀ କାମଦେବ ବାଣ । ଯେମନ୍ତ ଦହଇ ପରାଣ ।୫୮।
ଏ ଗନ୍ଧବାହ ତାର ପ୍ରାଏ । ନିରତେ ଦହୁଅଛି କାୟେ ।୫୯।

ଉନ୍ମୀଳନ୍ମଧୁଗନ୍ଧଲୁବ୍ଧମଧୁପବ୍ୟାଧୂତଚୂତାଙ୍କୁର -
କ୍ରୀଡ଼ତ୍କୋକିଳକାକଳୀକଳକଳୈରୁଦ୍‌ଗୀର୍ଣ୍ଣକର୍ଣ୍ଣଜ୍ୱରାଃ ।
ନୀୟନ୍ତେ ପଥିକୈଃ କଥଂ କଥମପି ଧ୍ୟାନାବଧାନକ୍ଷଣ-
ପ୍ରାପ୍ତପ୍ରାଣସମାସମାଗମରସୋଲ୍ଲାସୈରମୀ ବାସରାଃ ।। ଶ୍ଳୋକ-୯ ।।

ଅର୍ଥ -

ପ୍ରବାସୀ ଜନମାନେ ଯେତି । କାମ କଳାରେ ହୋଇଁ କଷ୍ଟି ।୬୦।
ବସନ୍ତକାଳ ଦିନମାନ । କଷ୍ଟକଷ୍ଟେ ନେଲେ କ୍ରମେଣ[3] ।୬୧।
ଯେଣେ ସେ ନେଲେ ଦିନମାନ[4] । ତାହା କହିବା ଅର୍ଥ ଶୁଣ ।୬୨।
ସ୍ୱଭାବେ[5] ଚିର ପରବାସୀ । ସଙ୍ଗତେ ନାହିଁ ତା ସୁକେଶୀ ।୬୩।
ବସନ୍ତ କାଳ ସେ ହୋଇଲା । ଅଙ୍ଗେଣ ମଦନ ବାଧିଲା ।୬୪।
ପୁଷ୍ପମାନଙ୍କ ମଧୁଗନ୍ଧ । ପାଇ ଭ୍ରମରମାନେ ଲୁବ୍‌ଧ ।୬୫।
ଚୂତମାନଙ୍କ ଶିଖା[6] ପର । ବକୁଳ ଦିଶନ୍ତି ସୁନ୍ଦର ।୬୬।
କୋକିଳ କଳ କଳ ଧ୍ୱନି । କ୍ରୀଡ଼ନ୍ତି ସଂକୁଳତା[7] ଘେନି ।୬୭।
ଏଣୁ ପଥିକ[8] ଜନମାନେ । ଶୁଣିଲା ମାତ୍ରକେ ଶ୍ରବଣେ[9] ।୬୮।
ହୃଦରେ କାମଦେବ ଜ୍ୱର । ପ୍ରବେଶ ହୋଏ ତାହାଙ୍କର ।୬୯।
ପ୍ରିୟାର ଅବଧି ସୁମରି । ଧ୍ୟାନ ମାର୍ଗେଣ ଦେହ ଧରି[10] ।୭୦।
ପାଇଲେ ପ୍ରାଣର ସମାନ । ଯେ ଶାଖା ତାର ସେ ରସିଣ ।୭୧।
ଭ୍ରୁଥାର ଭୁଲେ ଅଭିମାନ । କରିଣ ନେଲେ ଦିନମାନ ।୭୨।

---

୧. ଖ. ଏଣୁ
୨. ଖ. ସହେ
୩. ଖ. କର୍ମେଣ
୪. ଖ. ନିଶିଦିନ
୫. କ. ସେ ଭାବେ
୬. ଖ. ଶାଖା
୭. ଖ. ସକୁଳତା
୮. କ. ପଥୁକି
୯. କ. ସର୍ବେଣ
୧୦. ଖ. ଧ୍ୟାନ ମାର୍ଗରେ ଦିନ ହରି

ଏପନ ସମୟେ ଗୋବିନ୍ଦ । ସଙ୍ଗେତେ ଘେନି ଗୋପୀବୃନ୍ଦ ।୭୩।
କ୍ରୀଡ଼ା କରୁଛି ନାନା ରଙ୍ଗେ । ମିଳିଛି ସବୁଙ୍କରି ସଙ୍ଗେ ।୭୪।

ଅନେକନାରୀପରିରମ୍ଭସଂଭ୍ରମ -
ସ୍ଫୁରନ୍ମନୋହାରିବିଳାସଲାଳସମ୍ ।
ମୁରାରିମାରାଦୁପଦର୍ଶୟନ୍ତ୍ୟସୌ
ସଖୀ ସମକ୍ଷଂ ପୁନରାହ ରାଧିକାମ୍ ॥ ଶ୍ଳୋକ-୧୦ ॥

ଅର୍ଥ -

ଏମନ୍ତ ମୁରାରିକିଂ[୧] ଦେଖି । କହୁଛି ରାଧିକାର ସଖୀ ।୭୫।
ଅନେକ ନାରୀ ସଙ୍ଗତରେ । ମୁରାରି ଆଲିଙ୍ଗନ କରେ ।୭୬।
ବିଳାସ ରସେ ବ୍ୟଗ୍ର ହୋଇ । ଉଭାରି ଗୋପୀ ମଧ୍ୟେ ରହି ।୭୭।
ହରିଛି ସବୁଙ୍କରି ଚିତ୍ତ । ବିଳାସ ରସେଣ ଯେମନ୍ତ ।୭୮।
ସୁଜନେ ଏ ଗୀତ କେମନ୍ତ । ତା ହି କହିବା ଶୁଣ ଅର୍ଥ ।୭୯।
ହରି ଚରଣ ସୁମରଣ । କରିବାକୁ ଏ ସାର ଜାଣଂ[୨] ।୮୦।
ପୁଣି ଏ ଅଟଇ କେମନ୍ତ । ବର୍ଣ୍ଣିତ ସରସ ବସନ୍ତ ।୮୧।
ମଦନ ବିକାର ବିଶେଷ । ଯେଉଁ ଗୀତରେ ପରକାଶ ।୮୨।
ଶ୍ରୀ ଗୀତଗୋବିନ୍ଦର ଅର୍ଥ । ଅର୍ଥଗୋବିନ୍ଦ ସୁଖପଥ ।୮୩।
ସୁଜନେ ଶୁଣିମା[୩] ସରାଗି । ଯାଉ ଏ କାଳ[୪] ଦଣ୍ଡ ଭାଗି ।୮୪।
ପଞ୍ଚମ[୫] ଗାଥା ହୋଏ ଶେଷ । ଯେ ଧ୍ରୁବ ବଚନେ ପ୍ରକାଶ ।୮୫।
ସମସ୍ତେ ବୋଲ ହରି ହରି । ବୋଲୁଛି ମୁଁ ମୂଢ଼ ବନରି ।୮୬।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ବସନ୍ତବିଳାସବର୍ଣ୍ଣନେ*
*ମୂଢ଼ବନରିଦାସେନ କୃତୌ[୬] ନାମ*
*ପଞ୍ଚମ ଅଧ୍ୟାୟଃ ।*

---

୧. ଖ. ମୁରାରିଙ୍କୁ
୨. ଚ. ଯାଣ
୩. ଖ. ଶୁଣିବା
୪. ଚ. ଏକାନ୍ତ
୫. ଖ. ଚତୁର୍ଥ
୬. ଖ. କୃତେ

# ଷଷ୍ଠ ଅଧ୍ୟାୟ

[ରାଗଲକ୍ଷଣ - ସ୍ୱର୍ଣ୍ଣପ୍ରଭାଭାସ୍ୱରଭୂଷଣା ଚ ନୀଳଂ ନିଚୋଳଂ ବପୁଷା ବହନ୍ତୀ ।
କାନ୍ତେ ପ୍ରଦୋଷାନ୍ତମଧିଶ୍ରିତେଽପି ମାନୋନ୍ନତା ରାମକିରୀ ପ୍ରଦିଷ୍ଟା ।।]

(ରାମକିରୀରାଗେଣ ଗୀୟତେ)

*ଚନ୍ଦନଚର୍ଚ୍ଚିତନୀଳକଳେବରପୀତବସନ୍‌ବନମାଳୀ ।*
*କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗସ୍ମିତଶାଳୀ ।*
*ହରିରିହ ମୁଗ୍‌ଧବଧୂନିକରେ । ବିଳାସିନି ବିଳସତି କେଳିପରେ ।।ଧ୍ରୁବମ୍-୧।।*

ଅର୍ଥ -

| | | | |
|---|---|---|---|
| ପଞ୍ଚମ ଅଧ୍ୟା ଅନ୍ତେ ଆନ | । | ଷଷ୍ଠମ ଅଧ୍ୟା କଥା ଶୁଣ[୧] | ।୧। |
| ଗୀତଗୋବିନ୍ଦ ଅର୍ଥମାନ | । | ଅର୍ଥଗୋବିନ୍ଦ ଯେ ଲେଖନ | ।୨। |
| ସୁଜନେ ଶୁଣ ହେତୁ କରି | । | ଯେ ଗାଥା ନାମ ରାମକିରୀ | ।୩। |
| ରାଧିକା କର ଧରି ଦୂତୀ[୨] | । | ଚଳିଲା[୩] କୃଷ୍ଣଚନ୍ଦ୍ର କତି | ।୪। |
| ବୋଲଇ ଦେଖ ସଖୀ ମୋର | । | ଏଟି ଗୋ ପ୍ରାଣନାଥ[୪] ତୋର | ।୫। |
| ଚନ୍ଦନେ ଶ୍ୟାମ କଳେବର | । | କେମନ୍ତେ ଦିଶୁଛି[୫] ସୁନ୍ଦର | ।୬। |
| ଖିନ୍ନ କଟୀରେ ପୀତପଟ | । | ଶୋଭା ପାଉଛି ଝଟ ଝଟ | ।୭। |
| ରତ୍ନ ମେଖଳା ତଥି ପରେ | । | ଘଣ୍ଟି ଘାଗୁଡ଼ି ବାଦ୍ୟକରେ | ।୮। |
| ଏଟି ଗୋ ବନମାଳୀ ସହି | । | କଣ୍ଠେଛି ବନମାଳ ଲାଇ | ।୯। |

---

୧. ଵ. ସୁଣ
୨. ଵ. ଦୁତି
୩. ଵ. ଚଳନ୍ତା
୪. ଵ. ପ୍ରାଣସଖି
୫. ଖ. ଦିଶଇ

କେଳି କରନ୍ତେ ତଳତଳ[୧] । କର୍ଣ୍ଣରେ[୨] ଚଳଇ କୁଣ୍ଡଳ ।୧୦।
ଦ୍ରୁହସିତ ହୋଇ ବାରେ । ବହୁତ ବିଳାସିନୀ ଭୁଲେ[୩] ।୧୧।
ମୁଗ୍ଧ ବଧୂମାନଙ୍କୁ ଚାହିଁ । କରିଛି କ୍ରୀଡ଼ା ବ୍ୟଗ୍ର ହୋଇ ।୧୨।
ସେ ବିଳାସିନୀମାନେ ମିଳି । କରନ୍ତି ନାନାରଙ୍ଗେ କେଳି ।୧୩।

ଗୀତ -

*ପୀନପୟୋଧରଭାରଭରେଣ ହରିଂ ପରିରଭ୍ୟ ସରାଗମ୍ ।*
*ଗୋପବଧୂରନୁଗାୟତି କାଚିଦୁଦଞ୍ଚିତପଞ୍ଚମରାଗମ୍ ॥୨॥*

ଅର୍ଥ -

କେବଣ ଏକ ଗୋପସ୍ତିରୀ । ହରିଙ୍କି ପୀନଭାରେ[୪] କରି ।୧୪।
ସରାଗ କରି ଆଲିଙ୍ଗନ । କରି ତୋଷିଲା ତାର ମନ ।୧୫।
ପଞ୍ଚମ ସ୍ୱରେ ଗାଇ ଗୀତ । ରାସ କ୍ରୀଡ଼ାରେ ଉନମତ୍ତ ।୧୬।

ଗୀତ -

*କାऽପି ବିଳାସବିଲୋଳବିଲୋଚନଖେଳନଜନିତମନୋଜମ୍ ।*
*ଧ୍ୟାୟତି ମୁଗ୍ଧବଧୂରଧିକଂ ମଧୁସୂଦନବଦନସରୋଜମ୍ ।୩॥*

ଅର୍ଥ -

କେବଣ ଗୋପବଧୂ ଏକ । ବିଳାସ କଳାରେ[୫] ବିବେକ ।୧୭।
ଦିଶଇ ଲୋଚନ ଯୁଗଳ । କାମ ବିକାରେ ତା ଚଞ୍ଚଳ ।୧୮।
କାମ ବିକାରମାନ ତାର । ଜାଣି ହେଉଛି ଏ ପ୍ରକାର ।୧୯।
ଆରକ ଗୋପବଧୂ ହରି । ମୁଖପଦ୍ମକୁ ଧ୍ୟାନ କରି ।୨୦।

ଗୀତ -

*କାऽପି କପୋଳତଳେ ମିଳିତା ଲପିତୁଂ କିମପି ଶ୍ରୁତିମୂଳେ ।*
*ଚାରୁ ଚୁଚୁମ୍ବ ନିତମ୍ବବତୀ ଦୟିତଂ ପୁଲକୈରନୁକୂଳେ ॥୪॥*

---

୧. ଖ. ତଳହଳ
୨. ଖ. ଗଣ୍ଡରେ
୩. ଖ. ଦୁଲେ
୪. ଖ. ଭାବେ
୫. ଖ. କଳାରେ

ଅର୍ଥ -

| | | | |
|---|---|---|---|
| କେ ଗୋପୀ କୃଷ୍ଣ କର୍ଣ୍ଣ ପାଶେ | । | ମିଳିଲା କହିବାର ଆଶେ | ।୨୧। |
| ଦଇତ ଭୁଥାଂକୁ ଯେ କହି | । | ଚୁମ୍ବନ ଦେଲା ମୁଖେ ନେଇ | ।୨୨। |
| ଏ ଘେନି ଅଷ୍ଟାଙ୍ଗ ଶରୀରଂ[୧] | । | ପୁଲକ ହେଉଅଛି ତାର | ।୨୩। |

ଗୀତ -

*କେଳିକଳାକୁତୁକେନ ଚ କାଚିଦମୁଂ ଯମୁନାବନକୂଳେ ।*
*ମଞ୍ଜୁଳବଞ୍ଜୁଳକୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଳେ ॥୫॥*

ଅର୍ଥ -

| | | | |
|---|---|---|---|
| କେ କୃଷ୍ଣ ପିନ୍ଧିଲା ବସନ | । | ଧରି ଝିଙ୍କଇ ଘନ ଘନ | ।୨୪। |
| ଯମୁନା କୂଳେ ଘେନିଗଲା | । | ଏକାନ୍ତ ଥାନେ[୨] ପ୍ରବେଶିଲା | ।୨୫। |
| ତା ଇଚ୍ଛା ସୁଖେ କଲା କେଳି | । | ମିଳିଲା ଆରକ ଗୁଆଳି[୩] | ।୨୬। |
| ରାହାସ କ୍ରୀଡ଼ା କୃଷ୍ଣ ତୁଲେ | । | ଏମନ୍ତ ପ୍ରକାରେ ରହିଲେ | ।୨୭। |

ଗୀତ -

*କରତଳତାଳତରଳବଳୟାବଳିକଳିତକଳସ୍ୱନବଂଶେ ।*
*ରାସରସେ ସହନୃତ୍ୟପରା ହରିଣା ଯୁବତିଃ ପ୍ରଶଶଂସେ ॥୬॥*

ଅର୍ଥ -

| | | | |
|---|---|---|---|
| କେ କରତାଳ ମାରିବାରେ | । | କଙ୍କଣ ରଣଝଣ କରେ | ।୨୮। |
| ବଇଁଶୀ[୪] ଧ୍ୱନି ସଙ୍ଗତର | । | ମିଶିଣ ଶୁଭଇ ସୁନ୍ଦର[୫] | ।୨୯। |
| କୃଷ୍ଣ ସଙ୍ଗତେ ଯେତେ ନାରୀ | । | ରାସକ୍ରୀଡ଼ାରେ ନୃତ୍ୟକାରୀ[୬] | ।୩୦। |
| କାହାକୁ ପ୍ରଶଂସା କରଇ | । | କାହାକୁ ଆଲିଙ୍ଗନ ଦେଇ | ।୩୧। |

ଗୀତ -

*ଶ୍ଳିଷ୍ୟତି କାମପି ଚୁମ୍ବତି କାମପି କାମପି ରମୟତି ରାମାମ୍ ।*
*ପଶ୍ୟତି ସସ୍ମିତଚାରୁପରାମପରାମନୁଗଚ୍ଛତି ବାମାମ୍ ॥୭॥*

---

୧. କ. ସ୍ୱରୀର — ୪. ଖ. ବଂଶୀ
୨. ଖ. ସ୍ଥାନେ — ୫. ଖ. ଗମ୍ଭୀର
୩. ଖ. ଗୋଆଳୀ — ୬. ଖ. ନୃତ୍ୟକରି

ଅର୍ଥ -

କାହାର ଚୁମ୍ବଇ ବଦନ । କା ସଙ୍ଗେ ରାସ[୧] କ୍ରୀଡ଼ାମାନ ।୩୨।
କାହାକୁ ଦେଖି ହସୁଅଛି । କାହାକୁ ମନରେ ଧରିଛି ।୩୩।
କାହାର ପଛେ ପଛେ ହରି । ଗୋଡ଼ାଇ ଅଛି ପ୍ରେମ[୨] କରି ।୩୪।

ଭଣିତା -

*ଶ୍ରୀଜୟଦେବଭଣିତମିଦମଦ୍ଭୁତକେଶବକେଳିରହସ୍ୟମ୍ ।*
*ବୃନ୍ଦାବନବିପିନେ ଲଳିତଂ ବିତନୋତୁ ଶୁଭାନି ଯଶସ୍ୟମ୍ ॥୮॥*

ବିଶ୍ୱେଷାମନୁରଞ୍ଜନେନ ଜନୟନ୍ନାନନ୍ଦମିନ୍ଦୀବର-
ଶ୍ରେଣୀଶ୍ୟାମଳକୋମଳୈରୁପନୟନ୍ନଙ୍ଗୈରନଙ୍ଗୋତ୍ସବମ୍ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଲିଙ୍ଗିତଃ
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡ଼ତି ॥ ଶ୍ଳୋକ-୧୧ ॥

ଅର୍ଥ -

ଭୋ ସଖି ବୃନ୍ଦାବନେ ହରି । ଏମନ୍ତ ପ୍ରକାରେ ବିହରି ।୩୫।
ଏ ଋତୁ ବସନ୍ତ ସମୟେ । ମୁଗ୍ଧ ହୋଇଛି ଦେବରାୟେ ।୩୬।
କ୍ରୀଡ଼ା କରତା[୩] ହୋଇଅଛି । କେମନ୍ତ ଦେଖ ଗୋ ମୃଗାକ୍ଷି[୪] ।୩୭।
ବିଶ୍ୱ ଯେ ସଂସାରକୁ କହି । ଆନନ୍ଦ କରାଉଛି ସହି ।୩୮।
ନୀଳ ଉତ୍ପଳ ଶ୍ରେଣୀ ପ୍ରାୟେ[୫] । ଦିଶଇ ଶ୍ରୀକୃଷ୍ଣର କାୟେ ।୩୯।
କାମେ ଉତ୍ସବ ତାର ଚାହିଁ[୬] । ବେଢ଼ିଲେ ବ୍ରଜସ୍ତିରୀ ଯାଇଁ ।୪୦।
କରନ୍ତି ଆଲିଙ୍ଗନ ସଖୀ । ଦେଖୁ ତ ଅଛ ଚନ୍ଦ୍ରମୁଖୀ ।୪୧।
ଶୃଙ୍ଗାର ରସେ ମୂର୍ତ୍ତିବନ୍ତ[୭] । ହୋଇଛି ସବୁଙ୍କରି ଚିତ୍ତ ।୪୨।

୧. ଖ. କରେ
୨. କ. ପ୍ରେମେ
୩. କ. କରନ୍ତି
୪. ଖ. ମୃଗାକ୍ଷି
୫. ଖ. ପ୍ରିୟେ
୬. ଖ. ନାହିଁ
୭. କ. ମୂର୍ତି

ଅଦ୍ୟୋତ୍ସଙ୍ଗବସଦ୍ଭୁଜଙ୍ଗକବଳକ୍ଲେଶାଦିବେଶାଚଳଂ
ପ୍ରାଲେୟପ୍ଲବନେଚ୍ଛୟାନୁସରତି ଶ୍ରୀଖଣ୍ଡଶୈଳାନିଳଃ ।
କିଞ୍ଚିସ୍ନିଗ୍ଧରସାଳମୌଳିମୁକୁଳାନ୍ୟାଲୋକ୍ୟ ହର୍ଷୋଦୟା-
ଦୁନ୍ମୀଳନ୍ତି କୁହୁଃ କୁହୁରିତି କଳୋତ୍ତାଳାଃ ପିକାନାଂ ଗିରଃ ॥ ଶ୍ଳୋକ-୧୨॥

ଅର୍ଥ -

ପିକ ଯେ କୋକିଳକୁ କହି । ସେ କହୁ କୁହୁ ହୋଇ ସହି ।୪୩।
ଗମ୍ଭୀର କରି ବୋଲୁଛନ୍ତି । ଏକକୁ ଆରେକ ଗୋଡ଼ାନ୍ତି ।୪୪।
କେମନ୍ତେ ନୋହିବେ ସେ ମତ୍ତ । ତହିଁ କହିବା ତୋ ଅଗ୍ରତ ।୪୫।
ମଳୟ କନ୍ଦର ତେଜିଣ । ବହନ୍ତେ[1] ମଳୟ ପବନ ।୪୬।
ଚନ୍ଦନ ବନରେ ପ୍ରବେଶ । ଭୁଜଙ୍ଗ କଲେ ତାକୁ ଗ୍ରାସ ।୪୭।
ତେଜିଣ ଚନ୍ଦନ ବନସ୍ତ । ତରୁ[2] ଚଳିଲା ହେମବନ୍ତ[3] ।୪୮।
ସଭାବେ ବିଷଜାଳା ପାଇ । ତା ମନ କାହିଁ ନ ରହଇ ।୪୯।
ତାହାର କିଞ୍ଚିତ ପବନ । ଲାଗି[4] ରସାଳ ତରୁମାନ ।୫୦।
ନବ ପଲ୍ଲବେ ଶୋଭା ପାନ୍ତି । ବକୁଳମାନେ ପନ୍ତି ପନ୍ତି ।୫୧।
କୋକିଳମାନେ ଏଣୁ କରି । ଶବଦ କରୁଛନ୍ତି ପୂରି ।୫୨।
ହରଷ ହୋଇ ଏକେ ଏକେ । ଗୋଡ଼ାନ୍ତି ନାନା କଉତୁକେ ।୫୩।
ଏକେ ତ ବସନ୍ତ ସମୟେ । ଦୁଜେ ମଳୟ ବାୟୁ ବହେ ।୫୪।
ବିବିଧ କୁସୁମର ଗନ୍ଧ । ପାଇଁ ଭ୍ରମରମାନେ ଲୁବ୍ଧ ।୫୫।
ଶୁଣି ଏ କୋକିଳର ସ୍ୱନ । ବିରହୀ କେ ଧରୁ ଜୀବନ ।୫୬।
ହୋ ସଖି ଚାଲ ଏଥୁ ଯିବା । ବିଅର୍ଥେ ଦଣ୍ଡେହେଁ ନ ଥିବା ।୫୭।
ସେ ଯେବେ ନ ଲୋଡ଼ିଲା[5] ତେତେ । ତୁ କିମ୍ପା ରହିଥିବୁ ଏଥେ ।୫୮।
ଶୁଣ ଗୋ ଦୂତି ବୋଲେ ରାଧା । କୃଷ୍ଣଙ୍କୁ ମୋର ବଡ଼[6] ଶ୍ରଦ୍ଧା ।୫୯।
ତାକୁ ଏଡ଼ିଣ କେଣେ ଯିବି । ଏହି ଠାବରେ ଦଣ୍ଡେ ଥିବି ।୬୦।

---

୧. କ. ବହନ୍ତି
୨. ଖ. ଚହୁଁ
୩. ଖ. ହିମବନ୍ତ
୪. କ. ନାଗି
୫. କ. ଲ ଦେ ଡିଲା
୬. କ. ବହୁ

ସୁଜନେ ଶ୍ରୀ ଅର୍ଥଗୋବିନ୍ଦ । ଧ୍ରୁବ ବଚନ ପଦ୍ମପଦ ।୨୧।
ଶୁଣିଲେ ସୁଖ ଉଦେ ହୋଏ । କୋଟି କଳ୍ପରେ ଦୁଃଖ ନୋହେ ।୨୨।
କଳି କଲୁଷ ହୋଏ ଧ୍ୱଂସ । ବୋଲେ ବଜରି ମୂର୍ତ୍ତ ଦାସ ।୨୩।
ସୁଜନେ ନ ଧରିବ ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ[୧] ।୨୪।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ*
*ମୂର୍ତ୍ତବଜରିଦାସେନ କୃତୌ ସାମୋଦଦାମୋଦରୋ ନାମ*
*ପ୍ରଥମସର୍ଗଃ ।*

୧. ୨୪ ପଦ 'କ' ପୋଥିରେ ନାହିଁ

# ସପ୍ତମ ଅଧ୍ୟାୟ

ବିହରତି ବନେ ରାଧା ସାଧାରଣପ୍ରଣୟେ ହରୌ
ବିଗଳିତନିଜୋତ୍କର୍ଷାଦୀର୍ଷାବଶେନ ଗତାନ୍ୟତଃ ।
କ୍ୱଚିଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ
ମୁଖରଶିଖରେ ଲୀନା ଦୀନାପ୍ୟୁବାଚ ରହଃ ସଖୀମ୍ ॥ ଶ୍ଳୋକ-୧୩ ॥

ଅର୍ଥ -

| | | |
|---|---|---|
| ସୁଜନେ ଶୁଣ ଅନ୍ୟ ବାଣୀ । | ଯେ ଅର୍ଥଗୋବିନ୍ଦ କାହାଣୀ | ।୧। |
| ରାଧିକା ଦୂତୀ ମୁଖ ଚାହିଁ । | ଏକାନ୍ତ ସ୍ଥାନରେ କହଇ | ।୨। |
| ଦୁଃଖିତ ହୋଇ ବୋଲେ ସଖି । | ମୋ ସରି ନାହିଁ ଗୋ ନିର୍ମାଖି | ।୩। |
| ବାସୁଦେବର ଦୟା ମୋତେ । | ଜାଣିଲି ନାହିଁ ହୃଦଗତେ | ।୪। |
| ଯେ ମୋତେ ଦେଖି ସୁଖ ପାଇ । | ସେ ଏବେ ନ ଚାହିଁଲା ସହି | ।୫। |
| ଏମନ୍ତ ବୋଲି ବେନି ଜନେ । | ପ୍ରବେଶ ଏକ କୁଞ୍ଜବନେ | ।୬। |
| ଭ୍ରମରମାନେ ସେ ଲତାରେ । | ଶବଦ କରନ୍ତି ଗମ୍ଭୀରେ | ।୭। |
| ସେ ଲତା ଗୃହେ ଲୀନ ହୋଇ । | କେମନ୍ତେ ହୋନ୍ତେ ନିକି କହି[୧] | ।୮। |
| ହରି ସେ ବନେ ବିହରନ୍ତେ । | ବହୁତ ଯୁବତୀ ସଙ୍ଗତେ | ।୯। |
| ସବୁ ସ୍ତିରୀଙ୍କି ସାଧାରଣ । | ପ୍ରୀତି କରନ୍ତି ଏକଜଣ[୨] | ।୧୦। |
| ରାଧିକା ଅଧିକ ପୀରତି । | ନ ଦେଖି ରୁଷିଗଲା ଝାତି[୩] | ।୧୧। |
| ଯାଇଁଣ ସଖୀ ମୁଖ ଚାହିଁ । | ବୋଲଇ ଶୁଣ ପ୍ରାଣସହି | ।୧୨। |

୧. ଖ. ଲୀନ ହୋଇ
୨. ଙ. କରୁଛି ସେଛ୍ଟାଜଣ
୩. କ. ରାତି

(ଗୁର୍ଜ୍ଜରୀରାଗେଣ ଗୀୟତେ)

ଗୀତ -

*ସଂଚରଦଧରସୁଧାମଧୁରଧ୍ୱନିମୁଖରିତମୋହନବଂଶମ୍ ।*
*ଚଳିତଦୃଗଞ୍ଚଳଚଞ୍ଚଳମୌଳିକପୋଳବିଲୋଳବତଂସମ୍ ।*
*ରାସେ ହରିମିହ ବିହିତବିଳାସମ୍*
*ସ୍ମରତି ମନୋ ମମ କୃତପରିହାସମ୍ ॥ ଧ୍ରୁବମ୍ ॥*

ଅର୍ଥ -

| | | | |
|---|---|---|---|
| ଷଷ୍ଠମ[୧] ଗାଥା ଅନ୍ତେ ଆନ | । | ଗୁର୍ଜ୍ଜରୀ ଗାଥା ଅର୍ଥମାନ | ।୧୩। |
| ଭୋ ସଖି ରାହାସ କ୍ରୀଡ଼ାରେ | । | ମନ ମୋହର କୃଷ୍ଣଠାରେ | ।୧୪। |
| ଶରଧା ବଳିଛି ବହୁତ | । | ତୋ ଆଗେ କହୁଅଛି ସତ[୨] | ।୧୫। |
| ସେ ବାସୁଦେବ ପରିହାସ | । | ମୋ ତୁଲେ କରିଛି[୩] ବିଳାସ | ।୧୬। |
| ଏମନ୍ତ ମୋ ମନେ ସ୍ମରଣ | । | କରିଛି ପୁଣି ତାର ଗୁଣ | ।୧୭। |
| ସେ ହରି କେମନ୍ତ ହୋଇଛି | । | ଅଧରୁ ଅମୃତ ବହୁଛି | ।୧୮। |
| ତେଣୁ କରି ମଧୁର ହୋଇ | । | ବଇଁଶୀ[୪] ଧ୍ୱନି ଗୋ ଶୁଭଇ | ।୧୯। |
| ପୁଣି ସେ ହୋଇଛି କେମନ୍ତ | । | ବଇଁଶୀ ବାଇବା[୫] ଏମନ୍ତ | ।୨୦। |
| ସେ ଦୃଗଞ୍ଚଳ ଚକ୍ଷୁ ପ୍ରୀତି[୬] | । | ତେଣେ କରି ଚଞ୍ଚଳ ମତି[୭] | ।୨୧। |
| ମଉଳି ମୁକୁଟ ହରଷ | । | ପବନେ ଚଞ୍ଚଳ ତା କେଶ | ।୨୨। |
| ନୟନ କୋଣ ଚଳିବାରେ | । | ମୁନିମାନଙ୍କ ଧ୍ୟାନ ହରେ | ।୨୩। |

ଗୀତ -

*ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶମ୍ ।*
*ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶମ୍ ॥୨॥*

---

୧. କ. ଖ. ପଞ୍ଚମ
୨. କ. ସତ୍ୟ
୩. ଖ. କରିବ
୪. ଖ. ବଂଶୀ
୫. ଖ. ବାଜିବା
୬. କ. ଚକ୍ଷୁପ୍ରାନ୍ତ
୭. ଚ. ମତ

ଅର୍ଥ -

ଚନ୍ଦ୍ରମା ପ୍ରାୟେକ ସୁନ୍ଦର । ମୟୂର ପୁଚ୍ଛମାନଂ[1] ତାର ।୨୪।
ମଣ୍ଡିଛି କେଶମାନଙ୍କରେ । ସେ କେନ୍ଦ୍ରେଂ[2] ପ୍ରାୟେ ଶୋଭାକରେ ।୨୫।
ପ୍ରଚୁର ସୁନ୍ଦରକୁ କହି । ଏମନ୍ତ ଇନ୍ଦ୍ରଧନୁ ସହି ।୨୬।
ସେ ଯେହ୍ନେ କଳାମେଘେ ଗଛି । ତହିଁ ପରାୟେ ସୋହିଁ (ଶୋହି) ଅଛି ।୨୭।

ଗୀତ -

*ଗୋପକଦମ୍ବନିତମ୍ବବତୀମୁଖଚୁମ୍ବନଲମ୍ଭିତଲୋଭମ୍ ।*
*ବନ୍ଧୁଜୀବମଧୁରାଧରପଲ୍ଲବମୁଲ୍ଲସିତସ୍ମିତଶୋଭମ୍ ॥୩॥*

ଅର୍ଥ -

ଗୋପସ୍ତିରୀଙ୍କ ସମୋହରେ[3] । ଏକ ନିତମ୍ବବତୀ ଧରେ ।୨୮।
ଚୁମ୍ବନ କରିବାରେ ହରି । ଲୋଭ ବଳିଛି ସେ ସୁନ୍ଦରୀ ।୨୯।
ବନ୍ଧୁଲି ଫୁଲ ପ୍ରାୟେ ତାର । ଅଧର ପଲ୍ଲବ ସୁନ୍ଦର ।୩୦।
ଦରହସିତ ହୋଇବାରେ । ଶୋଭାପାଉଛି ସେ ଅଧରେ ।୩୧।

ଗୀତ -

*ବିପୁଳପୁଲକଭୁଜପଲ୍ଲବବଳୟିତବଲ୍ଲବଯୁବତିସହସ୍ରମ୍ ।*
*କରଚରଣୋରସିମଣିଗଣଭୂଷଣକିରଣବିଭିନ୍ନତମିସ୍ରମ୍ ॥୪॥*

ଅର୍ଥ -

ବହୁତ ପୁଲକ ତାହାର । ଉଦ୍ଧାମ[4] ହେଉଛି ଶରୀର ।୩୨।
ଭୁଜ ପଲ୍ଲବ ଏଣୁ କରି । ବେଷ୍ଟିତ ହୋଇଛି ସବୁରି ।୩୩।
ଗୋପ ସ୍ତ୍ରୀ ଚଉପାଶେ ଛନ୍ତି । ମଧ୍ୟରେ ଶ୍ରୀକୃଷ୍ଣ ଶୋଭନ୍ତି ।୩୪।
ସବୁରି କରରେ ତାରେ । ଯେତେକ ଅଳଙ୍କାର ଭରେ ।୩୫।
ଏହାଙ୍କ ତେଜେ କରି ଅତି । ଆଲୋ ଦିଶଇ ଚଉକତି ।୩୬।

---

୧. ଖ. ପକ୍ଷ
୨. ଖ. କେନ୍ତେ
୩. ଖ. ସେ ମୋହରେ
୪. ଖ. ଉଙ୍ଗମୋ ?

ଗୀତ -

*ଜଳଦପଟଳଚଳଦିନ୍ଦୁବିନିନ୍ଦକଚନ୍ଦନତିଳକଲଲାଟମ୍ ।*
*ପୀନପୟୋଧରପରିସରମର୍ଦ୍ଦନନିର୍ଦ୍ଦୟହୃଦୟକପାଟମ୍ ॥୫॥*

ଅର୍ଥ -

| | | |
|---|---|---|
| ଶ୍ରୀକୃଷ୍ଣ ଲଲାଟ ପଟରେ । | ଚନ୍ଦନ ବିନ୍ଦୁ ଶୋଭାକରେ | ।୩୭। |
| ସେ କେହ୍ନେ[1] ପାଉଅଛି ଶୋଭା । | କଥାଏ ପଟାନ୍ତର ଦେବା | ।୩୮। |
| ଜଳଦ ପଟଳ ଯେ ମେଘ । | ସେ ଯେହ୍ନେ[2] ଚଳିଯାନ୍ତେ ଶୀଘ୍ର | ।୩୯। |
| ଇନ୍ଦୁ ଯେ ଚନ୍ଦ୍ରମାକୁ କହି । | ସେ ଯେହ୍ନେ[3] ଶୋଭା ଗୋ ଦିଶଇ | ।୪୦। |
| ତହିଁ ପରାୟେ ଶୋହିଅଛି । | ପୁଣି ସେ କେମନ୍ତ ଶ୍ରୀବସି | ।୪୧। |
| ଯେ ପୀନ[4] ପୟୋଧର ସ୍ତନ । | ତା ଗାଢ଼େ[5] କରନ୍ତେ ମର୍ଦ୍ଦନ | ।୪୨। |
| ହୃଦୟ କବାଟ ତାହାର । | ନିର୍ଦ୍ଦୟ ହୋଇଛି ଭିତର | ।୪୩। |

ଗୀତ -

*ମଣିମୟମକରମନୋହରକୁଣ୍ଡଳମଣ୍ଡିତଗଣ୍ଡମୁଦାରମ୍ ।*
*ପୀତବସନମନୁଗତମୁନିମନୁଜସୁରାସୁରବରପରିବାରମ୍ ॥୬॥*

ଅର୍ଥ -

| | | |
|---|---|---|
| ମଣିମୟ ମକର ଝଳି । | କର୍ଣ୍ଣେ କୁଣ୍ଡଳ ବେନି ଡଳି | ।୪୪। |
| କେମନ୍ତ ମନୋହର ଅବା । | କୁଣ୍ଡଳ ପାଉଅଛି ଶୋଭା | ।୪୫। |
| ବେନି ଶ୍ରବଣତଟେ ଥାଇ । | କିଏ ଏ[6] ରବି ଛନ୍ତି ଉଇଁ | ।୪୬। |
| ଖ୍ରନମାଝାକୁ ପୀତାମ୍ବର । | ଦିଶଇ ବହୁତ ସୁନ୍ଦର | ।୪୭। |
| କୋଟି ମଦନ ନବଯୁବା । | ନିନ୍ଦୁଛି[7] ଶ୍ୟାମ ରୂପଶୋଭା | ।୪୮। |
| ବ୍ରହ୍ମା ଶଙ୍କର ସୁରନର । | ମୁନୀନ୍ଦ୍ର ଯୋଗୀନ୍ଦ୍ର କିନ୍ନର | ।୪୯। |
| ଯା ପାଦେ ପରିଚାର ପଣେ[8] । | ସେବା କରନ୍ତି ଅନୁକ୍ଷଣେ | ।୫୦। |

---

୧. ଖ. କେହ୍ନେ
୨. ଖ. ଯେହ୍ନେ
୩. ଖ. ଯେହ୍ନେ
୪. ଖ. ପୀନ ଯେ
୫. ଖ. ଘାଢେ
୬. ଖ. କି ଅଂଶେ
୭. ଖ. ଦିଶୁଛି
୮. ଖ. ଘଣେ

ଗୀତ -

*ବିଶଦକଦମ୍ବତଳେ ମିଳିତଂ କଳିକଲୁଷଭୟଂ ଶମୟନ୍ତମ୍ ।*
*ମାମପି କିମପି ତରଙ୍ଗଦନଙ୍ଗଦୃଶା ମନସା ରମୟନ୍ତମ୍ ॥୭॥*

ଅର୍ଥ -

ବିସ୍ତାର[୧] କଦମ୍ବ ମୂଳରେ । ଉତ୍ତାରି ଗୋପିକା ମଣ୍ଡଳେ[୨] ।୫୧।
କଳିଯୁଗରୁ ପାପ ଯେତେ । ନାଶ କରନ୍ତି ସେ ଯୁଗତେ ।୫୨।
ସେ ମୂର୍ତ୍ତି[୩] ସୁମରଣା କଲେ । ଦୁର୍ଗତିମାନେ ଯାନ୍ତି ଭଲେ ।୫୩।
ସେ ପୁଣି କେମନ୍ତ ହୋଇଛି । ରାଧିକା ସଖିଙ୍କି କହୁଛି ।୫୪।
କାମ ବିକାର ତୀକ୍ଷ୍ଣେ[୪] କରି । ରମୁଛି ମୋତେ ମନେ ଧରି ।୫୫।

ଭଣିତା -

*ଶ୍ରୀଜୟଦେବଭଣିତମତିସୁନ୍ଦରମୋହନମଧୁରିପୁରୂପମ୍ ।*
*ହରିଚରଣସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପମ୍ ॥୮॥*

ଗଣୟତି ଗୁଣଗ୍ରାମଂ ଭ୍ରାମଂ ଭ୍ରମାଦପି ନେହତେ
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।
ଯୁବତିଷୁ ବଳଦ୍ତୃଷ୍ଣେ କୃଷ୍ଣେ ବିହାରିଣି ମାଂ ବିନା
ପୁନରପି ମନୋ ବାମଂ କାମଂ କରୋତି କରୋମି କିମ୍ ॥ ଶ୍ଳୋକ-୧୪ ॥

ଅର୍ଥ -

ସେ କୃଷ୍ଣ ଅଟଇ କେମନ୍ତ । ତାହା କହିବା ତୋ ଅଗ୍ରତ ।୫୬।
ଭୋ ସଖି ସ୍ୱେ ମୋହର ମନ । ଶୁଣଇଁ କୃଷ୍ଣ ଗୁଣମାନ ।୫୭।
ନିମିଷେ ଭ୍ରମଗୋଳ ଯାଇଁ । ଅନୁବରତ ଚିତ୍ତେ ଥାଇଁ ।୫୮।
ଭ୍ରାନ୍ତି କରିଣ ଅନ୍ୟ କଥା । ମନକୁ ନ ଯାଇ ସର୍ବସ୍ଥା[୫] ।୫୯।

---

୧. କ. ବିଷାଦେ
୨. କ. ମଣ୍ଡୋଳେ
୩. ଖ. ମୁତି
୪. ଖ. ଚକ୍ଷୁ
୫. ଖ. ସ୍ରୁବଥା

ମୋ ମନ ସନ୍ତୋଷ ଗୋ ହୋଇଁ[1] । କୃଷ୍ଣର ଦୋଷ ନ ଘେନଇଁ[2] ।୭୦।
ସେ କୃଷ୍ଣ ଅନେକ ଯୁବତୀ । ତୁଷ୍ଣା[3] ବଳାଇ କଲା ପ୍ରୀତି ।୭୧।
ସ୍ୱଭାବେ ତାହାଙ୍କର ଚିତ୍ତେ । ଶ୍ରଦ୍ଧା ନଥାଇ[4] ସଖୀ ମୋତେ ।୭୨।
ସେ ଘେନି ମୁହିଁ[5] ବିଚାରଇ । ମୋହର କୃଷ୍ଣେ ତୁଷ୍ଣା ନାହିଁ ।୭୩।
ମୋ ମନ ହୋଏ ଅବା ବାମ । ତାହା ଖଣ୍ଡଇ ଦୁଷ୍ଟ[6] କାମ ।୭୪।
କି ବୁଦ୍ଧି କରିବି[7] ଗୋ ମିତ । ବିଚାରି କହ ମୋତେ ସତ[8] ।୭୫।
ତାହାଙ୍କ ଅନେକ ଯୁବତୀ । ସେ ମୋର ଏକ ପ୍ରିଅ[9] ପତି ।୭୬।
ସେ ପୁଣ୍ୟବନ୍ତ ଲୋକମାନ । ହରି ଚରଣେ କର ଧ୍ୟାନ ।୭୭।
ରାଧିକା ଦୂତିକା ସଂବାଦ । ଧ୍ରୁବ ବଚନେ ପଦ୍ମପାଦ ।୭୮।
ସପ୍ତମ[10] ଗାଥା ହୋଏ ଶେଷ । ବୋଲେ ବଜରି ମୂଢ଼ ଦାସ ।୭୯।

*ଇତି ଶ୍ରୀଅର୍ଥଗୋବିନ୍ଦେ ସରସକାବ୍ୟେ[11] ମହାଗ୍ରନ୍ଥେ*
*ମୂଢ଼ବଜରିଦାସେନ କୃତୌ*
*ସପ୍ତମୋଽଧ୍ୟାୟଃ ।*

---

୧. ଖ. ହୋଇ
୨. ଖ. ଘେନଇ
୩. ଖ. କୃଷ୍ଣା (?)
୪. ଖ. ପାଇ
୫. ଖ. ମୁଇଁ
୬. ଖ. ଦୁଷ୍ଟ
୭. ଭ. କରିବା
୮. ଭ. ସତ୍ୟ
୯. ଖ. ପ୍ରିୟ
୧୦. ଭ. ଅଷ୍ଟମ
୧୧. ଖ. ବାବ୍ୟେ

# ଅଷ୍ଟମ ଅଧ୍ୟାୟ

[ରାଗଲକ୍ଷଣମ୍ - ରତୋତ୍ସୁକା କାନ୍ତପଥପ୍ରତୀକ୍ଷା-ମାପାଦୟନ୍ତୀ ମୃଦୁପୁଷ୍ପତଳ୍ପେ ।
ଇତସ୍ତତଃ ପ୍ରେରିତଦୃଷ୍ଟିରାର୍ତ୍ତା ଶ୍ୟାମାଙ୍ଗନା ଗୁଣ୍ଡକିରୀ ପ୍ରଦିଷ୍ଟା ॥]

(ଗୁଣ୍ଡକିରୀ ରାଗେଣ ଗୀୟତେ)

*ନିଭୃତ ନିକୁଞ୍ଜଗୃହଂ ଗତୟା ନିଶି ରହସି ନିଲୀୟ ବସନ୍ତମ୍*
*ଚକିତବିଲୋକିତସକଳଦିଶା ରତିରଭସରସେନ ହସନ୍ତମ୍ ।*
*ସଖି ହେ, କେଶିମଥନମୁଦାରଂ*
*ରମୟ ମୟା ସହ ମଦନମନୋରଥଭାବିତୟା ସବିକାରମ୍ ॥ ଧ୍ରୁବମ୍-୧ ॥*

ଅର୍ଥ -

ସୁଜନେ ଶୁଣ ହେତୁ କରି । ଯେ ଗାଥା ନାମ ଗୁଣ୍ଡକିରୀ ।୧।
ଅଷ୍ଟମ ଅଧ୍ୟାରେ[୧] ଲେଖନ । ଗୀତ ଗୋବିନ୍ଦ ଅର୍ଥମାନ ।୨।
ରାଧିକା ସଖୀ ଆଗେ[୨] ତାର । କହଇ ଶୁଣ ପ୍ରିୟେ ମୋର ।୩।
କେଶିମଥନ ସଙ୍ଗତରେ । ଭେଟ କରାଅ ମୋତେ ବାରେ ।୪।
କେଶିମଥନଙ୍କୁ ମୁଁ ଆଜ । ଭେଟିଲେ ହେବ ଶୁଭକାର୍ଯ୍ୟ ।୫।
ମଦନ ମନୋରଥେ ମୋର । ଭାବିତ ହୋଇଛି ଭିତର ।୬।
କୁଞ୍ଜଗୃହରେ ନିଶାକାଳେ । ବସି ମୁଁ ଥିବି ଏକାନ୍ତରେ ।୭।
ଚକିତ ହୋଇ ଚଉକତି । ଚାହୁଁ ମୁଁ ଥିବି ବସି ଝାଟି[୩] ।୮।
ରତି ଉତ୍ସୁକେ କରି ହରି । ମୋ ଗୁଣ ହୃଦୟରେ ଧରି ।୯।
ଶରଧା ପାଇ ମୋତେ ଚାହିଁ । ହସୁଣ ଥିବ ଲଜ୍ଜା ବହି[୪] ।୧୦।

---

୧. କ. ଅଙ୍କରେ
୨. ଖ. ଆଗେ ସଖୀ
୩. ଖ. ରାତି
୪. ହସୁ ଯେ ଥିବ ଲଜ୍ଜା ବହି

ଗୀତ-

*ପ୍ରଥମସମାଗମଲଜ୍ଜିତୟା ପଟୁଚାଟୁଶତୈରନୁକୂଲମ୍ ।*
*ମୃଦୁମଧୁରସ୍ମିତଭାଷିତୟା ଶିଥିଳୀକୃତଜଘନଦୁକୂଲମ୍ ॥୨॥*

ଅର୍ଥ -

ବହୁତ କାଳ କୃଷ୍ଣ ସଙ୍ଗେ । ନ ଥିଲା ପ୍ରାୟେ ମୋର ଅଙ୍ଗେ ।୧୧।
ପ୍ରଥମ ସମାଗମ ପ୍ରାୟେ । ଲଜ୍ଜା ଗୋ ପାଉଥିବ ସହେ ।୧୨।
ହେଠ ବଦନ ହୋଇଁ ବସି । ରତିର ରସେ[୧] ଥିବି ରସି ।୧୩।
ଯେମନ୍ତ ଦେଖିଲେ ସେ ମୋର । ପଟୁ ସୁନ୍ଦର ଶଯ୍ୟେ ଥର ।୧୪।
ଚାଟୁ ବଚନ ଗୋ କହିବ । କାମେ ବିନସ୍ୟ ହୋଇଁଥିବ[୨] ।୧୫।
ମୁଁ ହସି ମୃଦୁବାଣୀ କରି । ତା ଅଙ୍ଗେ କହିବି ସୁନ୍ଦରୀ ।୧୬।
ଅମୃତ ବଚନେ ମୋହର । ଶୁଣି ସେ ହେବ ସୁଖକର ।୧୭।
ଯେ[୩] ମୋର ଜଘନରୁ ବାସ । କାଢ଼ିଣ[୪] ହୋଇବ ହରଷ ।୧୮।
ମୋ ଅଙ୍ଗେ ଲାଗିଲେ ତା କର । ରୋମାଞ୍ଚ ହୋଇବ ଶରୀର ।୧୯।

ଗୀତ -

*କିଶଳୟଶୟନନିବେଶିତୟା ଚିରମୁରସି ମମୈବ ଶୟାନମ୍ ।*
*କୃତପରିରମ୍ଭଣ ଚୁମ୍ବନୟା ପରିରଭ୍ୟ କୃତାଧରପାନମ୍ ॥୩॥*

ଅର୍ଥ -

ନୂଆ କୋମଳ ପତ୍ର ପାଡ଼ି । ତା ପରେ କୁସୁମ ବିଛାଡ଼ି[୫] ।୨୦।
ତଥିରେ ଶୋଇଁଥିବି ସଖୀ । ଯେମନ୍ତ ଶୟନ ମୋ ଦେଖି ।୨୧।
ବହୁତ କାଳ କୃଷ୍ଣ ମୋର । ଶୟନ କରିବ ଉପର ।୨୨।
ମୁଁ ତାକୁ[୬] ଆଲିଙ୍ଗନ କରି । ଚୁମ୍ବନ ଦେବି ମୁଖେ ଭରି ।୨୩।
ସେ ମୋତେ ଆଲିଙ୍ଗନ ଦେବ । ଅଧର ପାନ କରୁଥିବ ।୨୪।

---

୧. ଖ. ବସେ (ବଶେ ?)
୨. ଖ. ହେଉଥିବ
୩. ଖ. ଏ
୪. ଖ. କାଏଣ (?)
୫. ଖ. ନୂଆ କୋମଳ ପତ୍ର ପାନ୍ତି
ତାପରେ କୁସୁମ ବିଛାନ୍ତି ।
୬. ଖ. ତାଙ୍କୁ

ଗୀତ -

*ଅଳସନିମୀଳିତଲୋଚନୟା ପୁଲକାବଳିଲଳିତକପୋଳମ୍ ।*
*ଶ୍ରମଜଳସିକ୍ତକଳେବରୟା ବର-ମଦନମଦାଦତିଲୋଳମ୍ ॥୪॥*

ଅର୍ଥ -

| | | | |
|---|---|---|---|
| ଅଳସେ ନୟନ ମୋହର | । | ଢାଙ୍କିଣ ପଡୁଥିବ[୧] ଖର | ।୨୫। |
| ପୁଲକାବଳି ସେ କୃଷ୍ଣର | । | ଭଙ୍ଗିମ ହେଉଥିବ ଆର | ।୨୬। |
| ରୋମାଞ୍ଚ କରି ମନୋହର | । | କପୋଳ ହେଉଥିବ ତାର | ।୨୭। |
| ମୋର ଶୃଙ୍ଗାର ଶ୍ରମଝାଳ | । | ତା ଅଙ୍ଗେ ହୋଇବ ସକଳ | ।୨୮। |
| କୃଷ୍ଣ ମଦନ ମଦେ[୨] କରୀ | । | ଚଞ୍ଚଳ ହୋଉଁଥିବ[୩] ସରି | ।୨୯। |

ଗୀତ -

*କୋକିଳକଳରବକୂଜିତୟା ଜିତମନସିଜତନ୍ତ୍ରବିଚାରମ୍ ।*
*ଶ୍ଳଥକୁସୁମାକୁଳକୁନ୍ତଳୟା ନଖଲିଖିତଘନସ୍ତନଭାରମ୍ ॥୫॥*

ଅର୍ଥ -

| | | | |
|---|---|---|---|
| କୋକିଳ କଳରବ ପ୍ରାୟେ | । | ଧ୍ୱନି ମୁଁ କରୁଥିବି ସହେ | ।୩୦। |
| ମଦନ ଚରିତ[୪] ବିଚାର | । | ଜିଣି ଗୋ ଥିବେ ସେ ନାଗର | ।୩୧। |
| ଅଳପ ପୁଷ୍ପମାନେ ମୋର | । | ଖୋଷାରୁ ପଡୁଥିବେ ତଳ | ।୩୨। |
| ଖୋଷା ମୋ ଫିଟି ପଡୁଥିବ | । | ଯେମନ୍ତ ବେଳେ ସେ ଦେଖିବ | ।୩୩। |
| ଶ୍ରୀକୃଷ୍ଣ ନଖେ କରି ତାର | । | ଯେ ସ୍ତନ ଜଘନରେ ମୋର | ।୩୪। |
| ନକ୍ଷତ୍ର ଚିହ୍ନ ଦେଉଥିବ | । | ମଦନ ରସେ ରସିଥିବ | ।୩୫। |

ଗୀତ -

*ଚରଣରଣିତମଣିନୂପୁରୟା ପରିପୂରିତସୁରତବିତାନମ୍ ।*
*ମୁଖରବିଶୃଙ୍ଖଳମେଖଳୟା ସକଚଗ୍ରହଚୁମ୍ବନଦାନମ୍ ॥୬॥*

---

୧. ଖ. ଢାଙ୍କିଣ ପଡୁଥିବ ଖର
୨. ଖ. ରସେ
୩. ଖ. ହେଉଥିବ
୪. ଖ. ରଚିତ

ଅର୍ଥ -

ଏ ମୋର ଚରଣେ ନେପୁର[୧] । ମଣି ରସିତ ଯେ ସୁନ୍ଦର ।୩୬।
କୃଷ୍ଣର ପୁରତରେ ପୂରି । ଶବ୍ଦ କରିବ ବିସ୍ତାରି ।୩୭।
କଟିମେଖଳା କ୍ଷୁଦ୍ର ଘଣ୍ଟି । ଘାଗୁଡ଼ି ଶୁଭିବ ପ୍ରକଟି ।୩୮।
ଖୋଷା ମୋ ଧରି ଚୁମ୍ବ ଦେବ । କଟି ମେଖଳୀ ଫିଟିଥିବ ।୩୯।

ଗୀତ -

*ରତିସୁଖସମୟରସାଳସୟା ଦରମୁକୁଳିତନୟନସରୋଜମ୍ ।*
*ନିଃସହନିପତିତତନୁଲତୟା ମଧୁସୂଦନମୁଦିତମନୋଜମ୍ ॥୭॥*

ଅର୍ଥ -

ସୁରତି ସୁଖ ସମୟରେ । ଅଳସ ଥିବ ମୋ ଅଙ୍ଗରେ[୨] ।୪୦।
କୃଷ୍ଣ ନୟନ ପଦ୍ମ ବେନି । ଅଳ୍ପ ଫୁଟୁଥିବ[୩] ସଜନୀ ।୪୧।
କମକଳାକୁ ତାହାଙ୍କର । ନିଃସହ ହୋଇ ତନୁ ମୋର ।୪୨।
ସମର୍ପି ଥିବି ଗୋ ସୁମୁଖି । ମଧୁସୂଦନ ମୁଖ ଦେଖି ।୪୩।
ମନୋଜ ମଦନକୁ କହିଁ । ତା ଅଙ୍ଗେ ଉଦେ ଥିବ ହୋଇ ।୪୪।

ଭଣିତା -

*ଶ୍ରୀ ଜୟଦେବଭଣିତମିଦମତିଶୟମଧୁରିପୁନିଧୁବନଶୀଳମ୍ ।*
*ସୁଖମୁତ୍କଣ୍ଠିତରାଧିକୟା କଥିତଂ ବିତନୋତୁ ସଲୀଳମ୍ ॥୮॥*

ହସ୍ତସ୍ରସ୍ତବିଳାସବଂଶମନୃଜୁଭ୍ରୂବଲ୍ଲିମଦ୍‌ବଲ୍ଲବୀ
ବୃନ୍ଦୋତ୍ସାରିଦୃଗନ୍ତବୀକ୍ଷିତମତିସ୍ୱେଦାର୍ଦ୍ରଗଣ୍ଡସ୍ଥଳମ୍ ।
ମାମୁଦ୍‌ବୀକ୍ଷ୍ୟ ବିଲକ୍ଷିତସ୍ମିତସୁଧାମୁଗ୍‌ଧାନନଂ କାନନେ
ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟାମି ହୃଷ୍ୟାମି ଚ ॥ ଶ୍ଳୋକ -୧୫ ॥

---

୧. ଖ. ନୂପୁର
୨. ଖ. ସଙ୍ଗରେ
୩. ଖ. ଫିଟୁଥିବ

ଅର୍ଥ -

ଯେମନ୍ତ କରି ଯେବେ ବାରେ । ଭେଟ କରିବୁ ମୋତେ ତାରେ[୧] ।୪୫।
ତୋ କୀର୍ତ୍ତି[୨] କାଳେ କାଳେ ଥିବ । ମୋ ଅଙ୍ଗୁ କାମଜ୍ୱର ଯିବ ।୪୬।
ଭୋ ସଖି କାନନ ଯେ ବନ । ଯେଥେ ଗୋ ଛନ୍ତି ନନ୍ଦନାନ[୩] ।୪୭।
ଗୋପ ସ୍ତ୍ରୀମାନେ ଚଉକତି । ବେଢ଼ିଣ ଛନ୍ତି[୪] ତାଙ୍କୁ ଘେତି[୫] ।୪୮।
ଏମନ୍ତ ବେଳେ ମୋତେ ଦେଖି । ଲଜ୍ୟା ସେ ପାଇଲା ଗୋ ସଖି ।୪୯।
କାମ ବିକାର ହୃଦେ ତାର । ଶ୍ରୀମୁଖ ଦିଶୁଛି ସୁନ୍ଦର ।୫୦।
ହସ୍ତରେ ବିଳାସ ବଇଂଶୀ । ଛାଡ଼ି ନଥିଲେ ଗୋ ସୁକେଶୀ ।୫୧।
ଭ୍ରୁଚାପେ ବକ୍ରଦୃଷ୍ଟି କରି । ଚାହୁଁଣ ଛନ୍ତି ବ୍ରଜନାରୀ ।୫୨।
ଝାଳେ କରିଣ ଗଣ୍ଡସ୍ଥଳ । ଆର୍ଦ୍ର ହୋଇଛି ତା ସକଳ[୬] ।୫୩।
ଏମନ୍ତ ବେଳେ ତାକୁ ଦେଖି । ହର୍ଷ ମୁଁ ହୋଇଲି ଗୋ ସଖି ।୫୪।
ସେ ମୋତେ ଦେଖି ଲଜ୍ଜା ପାଇ । ବଦନ ନ ଟେକିଲା ସହି ।୫୫।

ଦୁରାଲୋକଃ ସ୍ତୋକସ୍ତବକନବକାଶୋକଲତିକା-
ବିକାଶଃ କାସାରୋପବନପବନୋଽପି ବ୍ୟଥୟତି ।
ଅପି ଭ୍ରାମ୍ୟଦ୍‌ଭୃଙ୍ଗୀରଣିତରମଣୀୟା ନ ମୁକୁଳ -
ପ୍ରସୂତିଶ୍ଚୂତାନାଂ ସଖି ଶିଖରିଣୀୟଂ ସୁଖୟତି ॥ ଶ୍ଳୋକ - ୧୬ ॥

ଅର୍ଥ -

ଭୋ ସଖି କୃଷ୍ଣ ଅଭାବରେ । ଯେମାନେ ପୀଡ଼ାକଲେ ମୋରେ ।୫୬।
ଦୂରୁ ଦିଶନ୍ତା ଅଳ୍ପ କଢ଼ି । ବିକାଶି ଆସୁଛି ଯେ ବଢ଼ି ।୫୭।
ଯେମନ୍ତ ଅଶୋକ ଯେ ବନ । ନୂଆ ଫୁଟିଲା[୭] କଢ଼ିମାନ ।୫୮।
ତାହାଙ୍କ ବିଳାସ ଯେ ବାସ । ସେ ବାଧା କରୁଛି ବିଶେଷ ।୫୯।

---

୧. ଖ. ଥରେ
୨. କ. କ୍ରୀଡ଼ା
୩. ଖ. ଏଥିକି ଗୋ ଛନ୍ତି ନନ୍ଦନାନ
୪. ଖ. ଛନ୍ତି
୫. ଖ. ହୋଡି ?
୬. କ. ୫୧ ଠାରୁ ୫୩ ପଦ ନାହିଁ
୭. ଖ. ଫୁଟିଲେ

| | | | |
|---|---|---|---|
| କାମର ଯେତି ସରୋବର | । | ତହିଁ[1] ନିକଟେ ଚୋଟା ଚୋର | ।୬୦। |
| ଜଳପୁଷ୍ପ ଘେନିଣ ଘେନ[2] | । | ବହଇ ମଳୟ ପବନ | ।୬୧। |
| ମୋ ଅଙ୍ଗେ ହୋଅନ୍ତେ ହାବୋଡ଼ | । | ମଦନ ବାଧା କଲା ଗାଢ଼ | ।୬୨। |
| ଭ୍ରମରମାନେ ମତ୍ତଭରେ[3] | । | ଚୁମ୍ବନ୍ତି କୁସୁମ କେଶରେ | ।୬୩। |
| ଭୋ ସଖି ଚୂତମାନଙ୍କର | । | ପ୍ରସୂତି ବୋଲି ଯେ ବକୁଳ | ।୬୪। |
| ସେ ଚୂତ ଡାଳ ପରେ ବସି | । | କୋକିଳ କୁହୁକୁହୁ ଭାଷି | ।୬୫। |
| ସେମାନ ଶୁଣିଲେ ଗୋ ଅବା | । | ବିରହୀ କେ ଦେହ ଧରିବା | ।୬୬। |
| ତୁ ମୋର ପ୍ରାଣସଖୀ ଯେଣୁ | । | ତୋ ଆଗେ କହିଲି ଗୋ ତେଣୁ | ।୬୭। |
| ତୁ ସିନା ବାରେ ବାରେ ମୋତେ | । | ରଖିଣ ଆସୁ[4] ଗୋ ଯୁଗତେ | ।୬୮। |
| ସେଥର ରଖି ଯେବେ ପାରୁ | । | ବିଶ୍ୱାସ ନାହିଁ ତୋହଠାରୁ | ।୬୯। |
| ସୁଜନ ଜନେ ଶୁଣ ଏହା | । | ନିରତେ ହୋଇଣ[5] ସୋରେହା | ।୭୦। |
| ସେଣେ ଘେନଇ ଯାର ଚିତ୍ତ | । | ହୃଦରେ ସୁଖ ହୋଏ ଜାତ | ।୭୧। |
| ସେଣୁ ସେ[6] କେମନ୍ତ ଅଟଇ | । | ମଧୁରି କୃଷ୍ଣକୁ ଯେ କହି | ।୭୨। |
| ନିଧୁବନରେ ବିହରଣ | । | କଥିତ ରାଧିକାର ଗୁଣ | ।୭୩। |
| ଗୀତ ଗୋବିନ୍ଦ ଅର୍ଥମାନ | । | ଅର୍ଥ ଗୋବିନ୍ଦ ଏ ଲିଖନ | ।୭୪। |
| ଧ୍ରୁବବଚନ ପରକାଶ | । | ଅଷ୍ଟମ ଗାଥା ହୋଏ ଶେଷ | ।୭୫। |
| ମୂଢ଼ ବଜରି ଦାସ କହେ | । | ଉଦ୍ଧର ପ୍ରଭୁ ଦେବରାଏ | ।୭୬। |

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟ ମହାଗ୍ରନ୍ଥେ*
*ମୂଢ଼ବଜରିଦାସେନ କୃତୌ ଅକ୍ଳେଶକେଶବୋ ନାମ*
*ଦ୍ୱିତୀୟଃ ସର୍ଗଃ ।*

---

୧. ଖ. ତହିଁ
୨. ଖ. ଘେନି ସଘନ
୩. କ. ଭୋଳେ
୪. ଖ. ରଖି ଆଣୁଛୁ
୫. ଖ. ହୋଇବ
୬. ଖ. ଏ ପୁଣି

# ନବମ ଅଧ୍ୟାୟ

କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଳାମ୍ ।
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ ॥ ଶ୍ଳୋକ-୧୭ ॥

ଅର୍ଥ -

ସୁଜନେ ଶୁଣ ଅନ୍ୟ ବାଣୀ । ଯେ ଅର୍ଥ ଗୋବିନ୍ଦ କାହାଣୀ ।୧।
କଂସାରି ଅଟନ୍ତି ଯେ ହରି । ସାର ବାସନା ଯେ ସଂସାରି ।୨।
ତହିଁକି କାରଣ ପୁରୁଷ । ଅଟନ୍ତି ପ୍ରଭୁ ପୀତବାସ ।୩।
ଏମନ୍ତ ରାଧିକାର ଗୁଣ । ହୃଦୟେ ଧରି ନାରାୟଣ ।୪।
ବ୍ରଜ ସୁନ୍ଦରୀମାନଙ୍କର । ସଙ୍ଗତ ଛାଡ଼ିଣ ନାଗର ।୫।

ଇତସ୍ତତସ୍ତାମନୁସୃତ୍ୟ ରାଧିକା -
ମନଙ୍ଗବାଣବ୍ରଣଖିନ୍ନମାନସଃ ।
କୃତାନୁତାପଃ ସ କଳିନ୍ଦନନ୍ଦିନୀ-
ତଟାନ୍ତକୁଞ୍ଜେ ବିଷସାଦ ମାଧବଃ ॥ ଶ୍ଳୋକ-୧୮ ॥

ଅର୍ଥ -

ସୁମରି ରାଧିକାର ଗୁଣ । ଅନଙ୍ଗ ବାଣେ ତନୁ କ୍ଷୀଣ[୧] ।୬।
ଅନେକ ବନ ଅନୁସରି । ଲୋଡ଼ନ୍ତି ରାଧିକା ସୁନ୍ଦରୀ ।୭।
ମନରେ ମହାତାପ ପାଇ । କଳିନ୍ଦସୁତା ତଟେ ଯାଇ ।୮।
କୁଞ୍ଜଗୃହରେ ବନମାଳୀ । ବିଷାଦ ହୋଇ ବସି ଭାଳି ।୯।
ମାଧବ ଯମୁନାର ତୀରେ । ବହୁତ ତାପ ହୃଦୟରେ ।୧୦।

୧. କ୍ଷ. କ୍ଷିନ

(ଗୁର୍ଜ୍ଜରୀରାଗେଣ ଗୀୟତେ)

ଗୀତ -

*ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ*
*ସାପରାଧତୟା ମୟାପି ନ ନିବାରିତାତିଭୟେନ ।*
*ହରି ହରି ହତାଦରତୟା ଗତା ସା କୁପିତେବ ॥ ଧ୍ରୁବମ୍-୧ ॥*

ଅର୍ଥ -

ସପ୍ତମ ଗାଥା ଅନ୍ତେ ଆନ । ଗୁର୍ଜ୍ଜରୀ ଗାଥା ଅର୍ଥମାନ ।୧୧।
ସୁଜନେ ସାବଧାନେ ଶୁଣ । ଏଠାରେ ଶ୍ରୀମୁଖ ବଚନ ।୧୨।
ବୋଲନ୍ତି ପ୍ରଭୁ ଭଗବାନ । ରାଧିକା ମୋହର ଜୀବନ ।୧୩।
ଦେଖିଣ ମୋ ଅଙ୍ଗ ଆଦର । ରୁଷିଣ ଗଲା ଏଥୁ ଖର ।୧୪।
କୋପ ତାହାର ହୃଦଗତେ । ବହୁତ ହୋଇଥିବ ମୋତେ ।୧୫।[୧]
ଖେଦ କରିଣ ହରି ହରି । ବୋଲନ୍ତି ପ୍ରଭୁ ଚକ୍ରଧାରୀ ।୧୬।
ଗୋପ ସ୍ତ୍ରୀମାନେ ମୋର ସଙ୍ଗେ । ବେଢ଼ିଣ ଥିଲେ ରାସ ରଙ୍ଗେ ।୧୭।
ଏମନ୍ତ ଦେଖିଣ ରାଧିକା । କୋପ ତା[୨] ହୋଇଲା ଅଧିକା ।୧୮।
ମୁହିଁ ତାହାକୁ ଭୟ କରି । ସମାଦ[୩] ନ ପାରିଲି କରି ।୧୯।

ଗୀତ -

*କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।*
*କିଂ ଧନେନ କିଂ ଜନେନ କିଂ ମମ ସୁଖେନ ଗୃହେଣ ॥୨॥*

ଅର୍ଥ -

କି କରୁଥିବ ମୋର ସଖି । କୃଷ୍ଣ ବିରହେ[୪] ଚନ୍ଦ୍ରମୁଖି ।୨୦।
କି ବୋଲି ବୋଲୁଥିବ ମୋତେ । ଏମନ୍ତ ଭାବୁଥିବ ଚିତ୍ତେ ।୨୧।
ଧନେ ମୋହର କିସ କାର୍ଯ୍ୟ । ସଖୀଙ୍କି ମୁରୁଛିବି[୫] ଆଜ ।୨୨।
ବିବିଧ ସୁଖମାନ ଯେତେ । ସବୁ ମଣିବ ବିଷପ୍ରତେ ।୨୩।
ଏମନ୍ତ ବୋଲୁଥିବ ଆର । କିସ ହୋଇବ ମୋର ଘର ।୨୪।

---

୧. 'ଖ' ପୋଥିରେ ୧୩ ପଦରୁ ୧୫ ପଦ ନାହିଁ
୨. ଖ. ନ
୩. ଖ. ସମାଦ
୪. ଖ. ବିରହ
୫. ଖ. ମୁରୁଛିଲ

ଗୀତ -

*ଚିନ୍ତୟାମି ତଦାନନଂ କୁଟିଳଭ୍ରୂକୋପଭରେଣ ।*
*ଶୋଣପଦ୍ମମିବୋପରି ଭ୍ରମତାକୁଳଂ ଭ୍ରମରେଣ ॥୩॥*

ଅର୍ଥ -

| | | | |
|---|---|---|---|
| କୃଷ୍ଣ ଯେମନ୍ତ ଚିନ୍ତା କରି | । | ବୋଲନ୍ତି ରାଧିକା ସୁନ୍ଦରୀ | ।୨୫। |
| ନିର୍ମଳ ପଦ୍ମମୁଖ ତାର | । | ଯେମନ୍ତ ଦିଶୁଥିବ ଖର | ।୨୬। |
| ଫୁଟିଲା ରକ୍ତପଦ୍ମ ପ୍ରାୟେ | । | କୋପେଣ ହୋଇଥିବ ତାୟେ | ।୨୭। |
| ପଦ୍ମଉପରେ ଭୃଙ୍ଗମାନେ | । | ଯେସନେ ଲୁବ୍ଧ ମଧୁପାନେ | ।୨୮। |
| ସେହି ପ୍ରକାରେ ଚକ୍ଷୁଦୁଇ | । | ମୁଖ ପଦ୍ମକୁ ଥିବ ଶୋହି | ।୨୯। |
| ଏମନ୍ତ ମୁଖଟି ଯାହାର | । | ତାକୁ ମୁଁ କିମ୍ପା ନିରନ୍ତର | ।୩୦। |

ଗୀତ -

*ତାମହଂ ହୃଦି ସଂଗତାମନିଶଂ ଭୃଶଂ ରମୟାମି ।*
*କିଂ ବନେଽନୁସରାମି ତାମିହ କିଂ ବୃଥା ବିଳପାମି ॥୪॥*

ଅର୍ଥ -

| | | | |
|---|---|---|---|
| ବନସ୍ତେ କି ଅର୍ଥେ ଲୋଡ଼ିବି | । | ବିଳାପ କିମ୍ପା କରୁଥିବି | ।୩୧। |
| ଭେଟିଲେ ଏବେ ନିରନ୍ତରେ | । | ସଂଗତ କରି ହୃଦୟରେ | ।୩୨। |
| ଅନୁବରତେ ରମୁଥିବି | । | ଆଉ କି ମୁରୁଛି ପାରିବି | ।୩୩। |

ଗୀତ -

*ତନ୍ୱି ! ଖିନ୍ନମସୂୟୟା ହୃଦୟଂ ତବାକଳୟାମି ।*
*ତନ୍ନ ବେଦ୍ମି କୁତୋ ଗତାସି ନ ତେଽନୁନୟାମି ॥୫॥*

ଅର୍ଥ -

| | | | |
|---|---|---|---|
| ପୁଣି ଏମନ୍ତ ବୋଲେ ହରି | । | ରାଧାକୁ ହୃଦୟରେ ଧରି | ।୩୪। |
| ଭୋ ସଖି ! କୃଶାଙ୍ଗି ତୁ ମତେ | । | ଇଚ୍ଛାୟେ ଖିନ୍ନ ହୋଇ ଚିତ୍ତେ | ।୩୫। |
| ଏ ତୋର ହୃଦୟର ଭାବ | । | ମୁଁ ଏବେ କଳି ପ୍ରିୟେ ଠାବ | ।୩୬। |
| ଏମନ୍ତ ଧରିଛୁ ତୋ ଚିତ୍ତେ | । | ନ ଦେଖି ନ ଲୋଡୁ ତୁ ମୋତେ | ।୩୭। |

କାହିଁକି ଗଲୁ ତୁ ଗୋ ସଖି । ମୁଁ ତା ନ ଜାଣେ ଚନ୍ଦ୍ରମୁଖି ।୩୮।
ବିନମ୍ର ହୋଇ ତେଣୁ ଚିତ୍ତେ । ଭାବୁଛି ଧରି ହୃଦଗତେ ।୩୯।

ଗୀତ -

*ହୃଦୟେ ପୁରତୋ ଗତାଗତମେବ ମେ ବିଦଧାସି ।*
*କିଂ ପୁରେବ ସସଂଭ୍ରମଂ ପରିରମ୍ଭଣଂ ନ ଦଦାସି ॥୬॥*

ଅର୍ଥ -

ଭୋ ସଖି ! ରାଧିକେ ତୁ ମୋତେ । ଦିଶୁଛୁଁ ନିକଟେ ଯୁଗତେ ।୪୦।
ନ ଆସୁ କିମ୍ବା କତି ମୋରେ । କି ଦୋଷ କଲି ପ୍ରିୟେ ତୋରେ ।୪୧।
ସରାଗ କରି ଆଲିଙ୍ଗନ । ମୋତେ ତୁ କର ଗୋ ବହନ ।୪୨।

ଗୀତ -

*କ୍ଷମ୍ୟତାମପରଂ କଦାପି ତବେଦୃଶଂ ନ କରୋମି ।*
*ଦେହି ସୁନ୍ଦରି ଦର୍ଶନଂ ମମ ମନ୍ମଥେନ ଦୁନୋମି ॥୭॥*

ଅର୍ଥ -

ଏ ଦୋଷ କ୍ଷମାକର ମୋର । ବୋଲରେ ଥିବି ପ୍ରିୟେ ତୋର ।୪୩।
ଉପୁରି[୧] ନ କରିବି ଦୋଷ । ସୁନ୍ଦରୀ ହୁଅ[୨] ମୋତେ ବଶ ।୪୪।
କାମଦେବର ବାଣେ କରି । ପୀଡ଼ା ପାଉଛି[୩] ମୋର ସରି ।୪୫।
ଏ ତୋର ଦରଶନ ଦେଇ । ମୋ ପ୍ରାଣ ରଖ ପ୍ରାଣ ସହି ।୪୬।

ଭଣିତା -

*ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରଣତେନ ।*
*କେନ୍ଦୁବିଲ୍ବସମୁଦ୍ରସମ୍ଭବରୋହିଣୀରମଣେନ ॥୮॥*

ହୃଦି ବିସଲତାହାରୋ ନାୟଂ ଭୁଜଙ୍ଗମନାୟକଃ
କୁବଳୟଦଳଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ ।
ମଳୟଜରଜୋ ନେଦଂ ଭସ୍ମ ପ୍ରିୟାରହିତେ ମୟି
ପ୍ରହର ନ ହରଭ୍ରାନ୍ତ୍ୟାଽନଙ୍ଗ ! କ୍ରୁଧା କିମୁ ଧାବସି ॥ ଶ୍ଳୋକ-୧୯ ॥

---

୧. କ. ଉପରେ
୨. ଖ. ହୋଅ
୩. ଖ. ପିଡା ପାଇଛି

ଅର୍ଥ -

ବିରହ ହୋଇଣ ମୁରାରି । କାମ ଦେବଙ୍କୁ ଦୁଷ୍ଟି[୧] କରି ।୪୭।
ଭୋ କାମଦେବ ! ମୋତେ ହର । ପ୍ରାୟେ କି ମଣିଲୁ ହୃଦର ।୪୮।
ହରଷେ ତୋହର ବଇରି । ହର ନୋହଇ ମୁଁଚି ହରି ।୪୯।
ହର ହୋଇଲେ ସର୍ପମାନେ । ଗଳାରେ ଥାନ୍ତେ ଅନୁକ୍ଷଣେ ।୫୦।
ଗରଳ ଦର୍ପେ କଣ୍ଠ ତାର । ନୀଳ ଆକାର ଦିଶେ ଆର ।୫୧।
ଭସ୍ମ ଲେପନ ହୋଇଥାଇଁ । ବିଭୂତି ଦେଖ ନୋହେ ଏହି ।୫୨।
ମୃଣାଳ ଲତା ହୃଦୟରେ । ଘେନିଛି ଶୀତଳ ଅର୍ଥରେ ।୫୩।
ବାସୁକି ପ୍ରାୟେ ତୁ ନ ମଣ । ଏକଇ ଲତାଟି ପ୍ରମାଣ ।୫୪।
କଣ୍ଠରେ କୁବଳୟ ଦଳ । ଘେନିଛି ଶୀତଳ ଅର୍ଥର ।୫୫।
ଦେହରେ ଲେପିଛି ଚନ୍ଦନ । ପାଉଁସ ପ୍ରାୟେ ତନୁ ମଣ ।୫୬।
ପ୍ରିୟା ଯେ ମୋହର ରାଧିକା । ତାହାଙ୍କୁ ନ ଦେଖିଣ ସେକା ।୫୭।
ବିରହ ହୋଇଣ ସେମାନ[୨] । ଘେନିଛି ମମ ହୃଦୟେଣ ।୫୮।
ଈଶ୍ୱର ପ୍ରାୟେ ତୁ ନ ମଣ । କହିଲା କଥା ମୋର ଘେନ ।୫୯।

ପାଣୌ ମା କୁରୁ ଚୂତସାୟକମମୁଂ ମା ଚାପମାରୋପୟ
କ୍ରୀଡ଼ାନିର୍ଜିତବିଶ୍ୱମୂର୍ଚ୍ଛିତଜନାଘାତେନ କିଂ ପୌରୁଷମ୍ ।
ତସ୍ୟା ଏବ ମୃଗୀଦୃଶୋ ମନସିଜପ୍ରେଙ୍ଖତ୍‌କଟାକ୍ଷାଶୁଗ-
ଶ୍ରେଣୀଜର୍ଜରିତଂ ମନାଗପି ମନୋ ନାଦ୍ୟାପି ସଂଧୁକ୍ଷତେ ॥ ଶ୍ଳୋକ-୨୦ ॥

ଅର୍ଥ -

ସେ ଚୂତ ସାୟକ ତୋହର । ହସ୍ତରେ ନ ଘେନ ହୋ ମାର ।୬୦।
ଚାପ ସହିତେ କର ଦୂର । କ୍ଷତ୍ରି[୩]ପଣକୁ ନିନ୍ଦା କର[୪] ।୬୧।
କ୍ରୀଡ଼ା ମାତ୍ରକେ ତିନିପୁର । ଜିଣିଲୁ ଘେନି ଯେଉଁ ଶର ।୬୨।

---

୧. ଖ. ସ୍ତୁତି
୨. ଖ. ମନ
୩. ଖ. ଛତି
୪. କ. ନିନ୍ଦା ତୋର

ବିରହେ କରି ମୃଛାଂ[1] ଯାଇଁ । ସ୍ୱଭାବେ ପଡ଼ିଅଛି ମୁହିଁ ।୬୩।
ଯେମନ୍ତ ଲୋକଙ୍କୁ ମାରନ୍ତେ । କି ପଉରୁଷ ଅଛି[2] ତୋତେ ।୬୪।
ତୁ ଅବା ବୋଲି କି ଯେମନ୍ତ । କେମନ୍ତେ ହୋଇଲୁ ମୂର୍ଛିତ ।୬୫।
ମୁଁ ତାହା କହଇ ତୋ ଆଗେ । ଶୁଣ ମଦନ ଯେଉଁ ବାଗେ ।୬୬।
ସେ ଯେବି ମୃଗଚକ୍ଷୁ ପ୍ରାୟେ । ଲୋଚନେ ଶୋଭା ଯୋଗଁ ପ୍ରାୟେ[3] ।୬୭।
ଯେମନ୍ତ ଯେ ରାଧା ସୁନ୍ଦରୀ । କଟାକ୍ଷ ବାଣେ ତନୁ ଘାରି ।୬୮।
ଯେ ନ୍ୟାସ୍ୱ[4] କରି ହୃଦ ମୋର । ଭିତରେ ହୋଇଛି ଜର୍ଜର ।୬୯।
ଯେଥ ଉପରେ ମାରି ଶର । କି ସାଧ ହୋଇବ ତୋହର ।୭୦।

*ଭ୍ରୂଚାପେ ନିହିତଃ କଟାକ୍ଷବିଶିଖୋ ନିର୍ମାତୁ ମର୍ମବ୍ୟଥାଂ*
*ଶ୍ୟାମାତ୍ମା କୁଟିଳଃ କରୋତୁ କବରୀଭାରୋଽପି ମାରୋଦ୍ୟମମ୍ ।*
*ମୋହଂ ତାବଦୟଂ ଚ ତନ୍ୱି ତନୁତାଂ ବିମ୍ବାଧରୋ ରାଗବାନ୍*
*ସଦ୍‌ବୃତ୍ତଃ ସ୍ତନମଣ୍ଡଳଂ ତବ କଥଂ ପ୍ରାଣୈର୍ମମ କ୍ରୀଡ଼ତି ॥ ଶ୍ଳୋକ-୨୧ ॥*

ଅର୍ଥ -

ପୁଣି ଆରତ ହୋଇ ହରି । ଲୋଡ଼ନ୍ତି ରାଧିକା ସୁନ୍ଦରୀ ।୭୧।
ବୋଲନ୍ତି ଭୋ ସଖି ତୋହର । ସ୍ତନମଣ୍ଡଳ ଗୋ ମୋହର ।୭୨।
ପ୍ରାଣର ତୁଲେ କ୍ରୀଡ଼ାମାନ । କରିଛି ଯେ ବିଧି ବିଧାନ ।୭୩।
ଭଲ ଲୋକର ଭଲ କଥା । ବୁଧେ ବଦନ୍ତି ଯେ ସର୍ବଥାଂ[5] ।୭୪।
ଯେ ମନ୍ଦଲୋକ ମନ୍ଦ କରେ । ଶୁଣିଲା ଅଛି ସବୁଠାରେ ।୭୫।
ଭ୍ରୂଲତା ଚାପେ କରି ତୋର । ଯୋଚିଛୁ କଟାକ୍ଷ ଯେ ଶର ।୭୬।
ସେ ମୋର ହୃଦେ ମର୍ମ ବ୍ୟଥା । ଜନମୁ[6] ଅଛି ଗୋ ସର୍ବଥା ।୭୭।
କୁଟିଳ କୁଆଁକୁଅଁ[7] ହୋଇ । କବରୀ ଭାର ତୋର ଶୋହି ।୭୮।

---

୧. ଖ. ମୃଛା (ମୂର୍ଚ୍ଛା)
୨. ଖ. କିପରି ରୋଷ ଅଛି
୩. ଖ. ଯାର ଗାୟେ
୪. ଚ. ନ୍ୟାଉ
୫. ଖ. ସର୍ବଦା
୬. ଖ. ଜନ୍ମାଉ
୭. କ. କୁଟିକୁଟି

ସେ ମୋତେ ମାରିବା ନିମନ୍ତେ । ଭଙ୍ଗିମଂ କରୁଅଛି ଚିତ୍ତେ ।୭୯।
ଯେମନ୍ତ ରାଗୀ ଲୋକ ଯେତୁ । ସେ ଭଲ କରିବଟି କାହୁଁ ।୮୦।
ହେ ତନ୍ୱି ବେଦିଏ(୨) ତୋହର । ସୁନ୍ଦର ଦିଶେ ବିମ୍ବାଧର ।୮୧[୨]।
ପାଚିଲା ଚରଡ଼ା ପରାଏ । ଓଷ୍ଠ ତୋ ରାଗବର୍ଣ୍ଣ[୩] ଶୋହେ ।୮୨।
ଏ ଘେନି କରି ପ୍ରିୟେ ମୋତେ । ମୋହ କରାଉ ଅଛୁ ଚିତ୍ତେ ।୮୩।
ରାଗୀ ଲୋକର ମନ୍ଦ ଭାବ । ଏ କଥା ଅଟଇ ସ୍ୱଭାବ ।୮୪।
ସଦବୃତ୍ତ ସ୍ତନମଣ୍ଡଳ । ପ୍ରାଣର ତୁଲେ କ୍ରୀଡ଼ା ମୋର ।୮୫।
କରିଛି ନିରନ୍ତରେ ଯେଣୁ । କହିଲି ପ୍ରିୟେ ତୋରେ[୪] ତେଣୁ ।୮୬।

**ତାନି ସ୍ପର୍ଶସୁଖାନି ତେ ଚ ତରଳାଃ ସ୍ନିଗ୍ଧା ଦୃଶୋର୍ବିଭ୍ରମା-**
**ସ୍ତଦ୍ୱକ୍ତ୍ରାମ୍ବୁଜସୌରଭଂ ସ ଚ ସୁଧାସ୍ୟନ୍ଦୀ ଗିରାଂ ବକ୍ରିମା ।**
**ସା ବିମ୍ବାଧରମାଧୁରୀତି ବିଷୟାସଙ୍ଗେଽପି ଚେନ୍ମାନସଂ**
**ତସ୍ୟାଂ ଲଗ୍ନସମାଧି ହନ୍ତ ବିରହବ୍ୟାଧିଃ କଥଂ ବର୍ଦ୍ଧତେ ॥** ଶ୍ଳୋକ-୨୨ ॥

ଅର୍ଥ -

ପୁଣି ବୋଲନ୍ତି ଭାବଗ୍ରାହୀ । କେମନ୍ତ ହୋଇଣ ସେ ରାହି ।୮୭।
ଏ ମୋର ବିରହ ବ୍ୟାଧିରେ । ବ୍ରତିଛି[୫] କେମନ୍ତ ପ୍ରକାରେ ।୮୮।
ସମାଧି କରିବାର ମନେ । ସେ ରାଧା ଅଛି ଅନୁକ୍ଷଣେ ।୮୯।
ତା ଆଲିଙ୍ଗନ ସୁଖ ମୋର । ମନରୁ ଯିବ କି ବିସୋର ।୯୦।
ଚଞ୍ଚଳ କରି ଚାହିଁବାରେ । କେ ଦେହ ଧରିବ ସଂସାରେ ।୯୧।
ତାହାର ମୁଖପଦ୍ମ ଭାବ । ସୌରଭ ସୁଗନ୍ଧ ସ୍ୱଭାବ ।୯୨।
ଅମୃତ ପ୍ରାଏ ବ୍ୟକ୍ତ[୬] କରି । କହଇ ବଚନ ମାଧୁରୀ ।୯୩।
ତା ବିମ୍ବ ଅଧର ମଧୁର । ଭାବ କି ମନୁଁ ଯିବ ମୋର ।୯୪।
ଯେମନ୍ତେ ହୋଇଣ ରାଧାର । ବିଷୟେ ଯୁକ୍ତ ଦାମୋଦର ।୯୫।
ତୁଥନ୍ତେ ହେ ବିରହ ବ୍ୟାଧି । ନ ଯାଉଁ ଏଣେ କେଉଁ ବୁଦ୍ଧି ।୯୬।

---

୧. ଷ. ଉଦ୍ୟମ
୨. ଷ. ୮୦ ଓ ୮୧ ପଦ ନାହିଁ
୩. ଷ. ତୋର
୪. ଷ. ତୋର
୫. ଷ. ବର୍ତ୍ତିଛି
୬. ଷ. ବକ୍ତୃ

ଭ୍ରୂପଲ୍ଲବଂ ଧନୁରପାଙ୍ଗତରଙ୍ଗିତାନି
ବାଣା ଗୁଣାଃ ଶ୍ରବଣପାଳିରିତି ସ୍ମରେଣ ।
ତସ୍ୟାମନଙ୍ଗଜୟଜଙ୍ଗମଦେବତାସ୍ତ୍ରା-
ମସ୍ତ୍ରାଣି ନିର୍ଜ୍ଜିତଜଗନ୍ତି କିମର୍ପିତାନି ॥ ଶ୍ଳୋକ-୨୩ ॥

ଅର୍ଥ -

| | | |
|---|---|---|
| ବୋଲନ୍ତି ପ୍ରଭୁ ଚକ୍ରଧର | ରାଧିକେ ମଦନ ତୋଠାର | ।୯୭। |
| ଏମନ୍ତ ବିଚାରଣ ମନେ | ଥୋଇଲା ତାର ଅସ୍ତ୍ରମାନେ | ।୯୮। |
| ଯୋଗୀ ଜଙ୍ଗମ ସୁର ନର | ଜିଣିଲା ଘେନିଣ ଏ ଶର | ।୯୯। |
| ତିନି ଭୁବନ ଲୋକ ଜିଣି | ତା ଯେତେ ଅସ୍ତ୍ରମାନ ଆଣି | ।୧୦୦। |
| ତୋ ଠାରେ ଯତ୍ନ କରି ଥୋଇ | ତା ମନେ ମହାସୁଖ ପାଇଁ | ।୧୦୧। |
| ଏ ତୋର ଭ୍ରୂଲତା ଗୋ ସହେ | ହୋଇଲା କୋଦଣ୍ଡ ପରାଏ | ।୧୦୨। |
| ଅପାଙ୍ଗ ଚଞ୍ଚଳ ଲୋଚନେ | ଚାହାନ୍ତେ ହେଲେ ବାଣମାନେ | ।୧୦୩। |
| ଶ୍ରବଣ[୧] ପାଳି ପ୍ରାନ୍ତ ଲଇଂ[୨] | ସେହି ସେ ଗୁଣପ୍ରାଏ ଶୋହି | ।୧୦୪। |
| ସ୍ୱେଣେ କରି ଜଗତଯାକ | ଜିଣିଲା ସୁରତି ନାୟେକ | ।୧୦୫। |
| ଏ ଗୀତ ଅଟଇ କେମନ୍ତ | ଶ୍ରୀହରି ବଚନେ ଭଣିତ | ।୧୦୬। |
| ସମୁଦ୍ରଜାତ ଯେ ରୋହିଣୀ | ତାହାର କାନ୍ତ ଚନ୍ଦ୍ର ପୁଣି | ।୧୦୭। |
| ଶରଦେ ହୋନ୍ତେ ନିଶାକାଳ | ଚୌଦିଗ ଯେମନ୍ତ ଉଜ୍ଜ୍ୱଳ | ।୧୦୮। |
| ପ୍ରାଣୀମାନଙ୍କୁ ସେହିମତି | ଅଜ୍ଞାନ ଖଣ୍ଡଇ ଏ ଖ୍ୟାତି | ।୧୦୯। |
| ନବମ[୩] ଗାଥା ହୋଏ ଶେଷ | ଯେ ଧ୍ରୁବ ବଚନ ପ୍ରକାଶ | ।୧୧୦। |
| ସୁଜନେ ଆଜ୍ଞା ମୋତେ ହେବା | ତୁମ୍ଭ ଚରଣେ ନିତ୍ୟ ସେବା | ।୧୧୧। |
| ଏ ବିନୁ ନ ଜାଣଇଁ ଆନ | ତୁମ୍ଭେ ମୋହର ମୂଳ ଧ୍ୟାନ | ।୧୧୨। |
| ମୃତ୍ୟୁ ବଜରି ଦାସ ଛାର | ତୁମ୍ଭର ଜନମ କୋୟେର | ।୧୧୩। |

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ*
*ମୃତ୍ୟୁବଜରିଦାସେନ କୃତୌ ବିଷାଦବର୍ଣ୍ଣନେ ମୁଗ୍ଧମଧୁସୂଦନୋ ନାମ*
*ତୃତୀୟଃ ସର୍ଗଃ ।*

---

୧. କ. ଶର୍ବଣ
୨. ଖ. ପାଇଁ
୩. କ. ଅଷ୍ଟମ

# ଦଶମ ଅଧ୍ୟାୟ

ଯମୁନାତୀରବାନୀରନିକୁଞ୍ଜେ ମନ୍ଦମାସ୍ଥିତମ୍ ।
ପ୍ରାହ ପ୍ରେମଭରୋଦ୍‌ଭ୍ରାନ୍ତଂ ମାଧବଂ ରାଧିକାସଖୀ ॥ ଶ୍ଳୋକ-୨୪ ॥

ଅର୍ଥ -

ସୁଜନେ ଶୁଣ ଅନ୍ୟ ବାଣୀ । ଯେ ଅର୍ଥଗୋବିନ୍ଦ କାହାଣୀ ।୧।
ଶ୍ରୀକୃଷ୍ଣେ ଯମୁନାର ତୀରେ । ବେଗୁନୁଆ କୁଞ୍ଜ ଭିତରେ ।୨।
ବସି ଅଛନ୍ତି ସ୍ଥିର ହୋଇ । ମଦନ ବାଣେ ପୀଡ଼ା ପାଇ ।୩।
ରାଧିକା ତହିଁ ପ୍ରେମଭରେ । ଭ୍ରାନ୍ତି କରିଣ ହୃଦୟରେ ।୪।
ଏମନ୍ତ ମାଧବକୁ ଦେଖି । କହୁଛି ରାଧିକାର ସଖୀ ।୫।

[ରାଗଲକ୍ଷଣ- କୃପାଣପାଣିର୍ଗଜଦନ୍ତଖଣ୍ଡ-ମେକଂ ବହନ୍ ଦକ୍ଷିଣକର୍ଣ୍ଣପୂରମ୍ ।
ସଂସ୍ତୂୟମାନଃ ସୁରଚାରଣୌଘୈଃ କର୍ଣ୍ଣାଟରାଗଃ ଶିଖିକଣ୍ଠନୀଳଃ ॥]

(କର୍ଣ୍ଣାଟରାଗେଣ ଗୀୟତେ)

ଗୀତ -

*ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀରମ୍ ।*
*ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟସମୀରମ୍ ।*
*ସା ବିରହେ ତବ ଦୀନା ।*
*ମାଧବ ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା ॥ ଧ୍ରୁବମ୍-୧ ॥*

ଅର୍ଥ -

କନ୍ନାଟ ଗଉଡ଼ା ରାଗେଣ । ଏହ୍ନେ ଗାଥାଂ[୧] ବୋଲେ ପ୍ରଭୁ ଶୁଣ ।୬।
ତବ ବିରହେ ଦାମୋଦର । କ୍ଷୀଣ ହୋଇଛି ସଖୀ ମୋର ।୭।
ମାଧବ ମନସିଜ ବାଣ । ସହି ନ ପାରି ଆତଙ୍କେଣ ।୮।

୧. ଖ. ଗାଥାରେ

ଭାବୁଛି ତୋ ନାମ ନିରତେ । ଲୀନ ହୋଇଛି ହୃଦଗତେ ।୯।
କାମଦେବଙ୍କୁ ଭୟ କରି । ବିଶିଖ ବାଣ ତାଙ୍କୁ[1] ଡରି ।୧୦।
ତୋ ପାଦେ ଶରଣ ମୁରାରି । ମୋ ସଖୀ ମନ୍ଦରେ ବିଚାରି ।୧୧।
ପଶୁଛି ରଖ ଭାବଗ୍ରାହୀ । କେମନ୍ତ ହୋଇଛି ମୋ ସହି ।୧୨।
ଚନ୍ଦ୍ରକୁ ଦେଖିଣ ମୃଗାଛି[2] । ବହୁତ ନିନ୍ଦା କରୁଅଛି ।୧୩।
ଚନ୍ଦନ ଲେପନ୍ତେ ଶ୍ରୀଅଙ୍ଗେ । ତାହି ମଣଇ ବିଷ ସଙ୍ଗେ ।୧୪।
ତା ପଣ କହିବଇଁ[3] କେତେ । ଖେଦ ବା ହୃଦୟର ଯେତେ ।୧୫।
ମଳୟ ପବନ ବହନ୍ତେ । ବିଚାର କଲା ବାଳୀ ଚିତ୍ତେ ।୧୬।
ବ୍ୟାଳ ନିଳୟ ଯାକୁ କହି । ଅର୍ଥରେ ସର୍ପ ସେ ଅଟଇ ।୧୭।
ମିଳନ୍ତେ ତାର ନିଜ ସ୍ଥାନେ । ମିଶି ଗରଳ ଜ୍ୟୋତିମାନେ ।୧୮।
ଅଇଲେ ବୋଲି ବିଚାରଇଁ । ମନରେ ମହାଖେଦ ପାଇଁ ।୧୯।
ସ୍ୱେଂ[4] ଘେନି ମଳୟ ପବନ । ମଣଇଁ ଗରଳ ଯେସନ ।୨୦।

ଗୀତ -

*ଅବିରତନିପତିତମଦନଶରାଦିବ ଭବଦବନାୟ ବିଶାଳମ୍ ।*
*ସ୍ୱହୃଦୟମର୍ମଣି ବର୍ମ କରୋତି ସଜଳନଳିନୀଦଳଜାଳମ୍ ॥୨॥*

ତୋର ଅଭାବେ ଜନାର୍ଦ୍ଦନ । ରୁଚଇ ନାହିଁ ତାକୁ ଅନ୍ନ[5] ।୨୧।
ଆପଣା ହୃଦୟରେ ତାର । ଜଳଯୁକ୍ତ କରି ମୃଣାଳ ।୨୨।
ପତ୍ରମାନ ବିସ୍ତାର କରି । ଶେଯ୍ୟା ସେ[6] କରିଛି ସୁନ୍ଦେରୀ[7] ।୨୩।
କାମଦେବର ବାଣମାନ । ପଡ଼ନ୍ତେ ପରେ ଅନୁକ୍ଷଣ ।୨୪।
ତୁ ଯେ ରାଧିକା ହୃଦୟେଣ । ଭୋ କୃଷ୍ଣ ଥାଉ ଅନୁକ୍ଷଣ ।୨୫।
ପୀଡ଼ା କରଇ ବୋଲି ତୋତେ । ସେହ୍ନା ସେ[8] ପିନ୍ଧିଛି ଯୁଗତେ ।୨୬।

---

୧. ଖ. ବାଣକୁ ତା
୨. କ. ମୃଗାକ୍ଷି
୩. କ. କହିବି ମୁଁ
୪. ଖ. ଏ
୫. ଖ. ଅନ୍ୟ
୬. ଖ. ସେହା ସେ
୭. ଖ. ସୁନ୍ଦରୀ
୮. କ. ସେନ୍ନା, ଖ. ସେନ୍ହା ସେ

ମଦନ ଜ୍ୱରେ ତନୁ ତୋର । ସନ୍ତପ୍ତ ହୋଇଁ ବୋଲି ତାର ।୨୭।
ହୃଦରେ ପଦ୍ମପତ୍ରମାନ । ଦେଖି ଅଇଲି ମୁଁ ବହନ ।୨୮।

ଗୀତ -

*କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟମ୍ ।*
*ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟମ୍ ॥୩॥*

ଅର୍ଥ -

ଶଯ୍ୟାଂ[୧] କରିଣ ପୁଷ୍ପମାନ । ତା ପରେ କରିଛି ଶୟନ ।୨୯।
ମଦନ ଶର ପୁଷ୍ପ ଯେଣୁ । ସେ ଶର ଶଯ୍ୟା କଲାଂ[୨] ତେଣୁ ।୩୦।
ଏମନ୍ତ ମଣିଲି ମୁଁ ହରି । ବ୍ରତ ସେ କରିଛି ସୁନ୍ଦରୀ ।୩୧।
ତୋ ଆଲିଙ୍ଗନ ସୁଖ ଅର୍ଥେ । ବାଞ୍ଛା ସେ କରଇ ଯୁଗତେ ।୩୨।

ଗୀତ -

*ବହତି ଚ ବିଗଳିତଲୋଚନଜଳଧରମାନନକମଳମୁଦାରମ୍ ।*
*ବିଧୁମିବ ବିକଟବିଧୁନ୍ତୁଦଦନ୍ତଦଳନଗଳିତାମୃତଧାରମ୍ ॥୪॥*

ଅର୍ଥ -

ଭୋ କୃଷ୍ଣ ରାଧିକା ଆନନ । ଦିଶଇ କମଳ ଯେସନ ।୩୩।
ଖଞ୍ଜନ ଲୋଚନରୁ ତାର । ବହୁଛି ଲୋତକ ଯେ ଧାର ।୩୪।
ସେ ଜଳଧାର କାହାଂ[୩] ପ୍ରାଏ[୪] । ଦିଶଇ ଶୁଣିମାଂ[୫] କଥାଏ ।୩୫।
ବିଧୁନ୍ତୁଦ ଯେ ରାହୁ ତାର । ଚନ୍ଦ୍ରକୁ ଗ୍ରାସିଲା ଉତ୍ତାର ।୩୬।
ଅମୃତ ଧାରା ଯେହ୍ନେ ବହେ । ଦିଶୁଛି ତେମନ୍ତ ପରାଏ ।୩୭।

ଗୀତ -

*ବିଲିଖତି ରହସି କୁରଙ୍ଗମଦେନ ଭବନ୍ତମସମଶରଭୂତମ୍ ।*
*ପ୍ରଣମତି ମକରମଧୋ ବିନିଧାୟ କରେ ଚ ଶରଂ ନବଚୂତମ୍ ॥୫॥*

---

୧. ଖ. ଶଜ୍ଜା
୨. ଖ. ଶଜାଇଲା
୩. ଖ. କାହିଁ
୪. ଖ. ପ୍ରାୟେ
୫. ଖ. ଶୁଣିବା

ଅର୍ଥ -

ଆର କଥାଏ ଶୁଣ ଆନ । ଭୋ କୃଷ୍ଣ ହୋଇଁ[୧] ସାବଧାନ ।୩୮।
କୁରଙ୍ଗ ମଦ ଯେ କସ୍ତୂରୀ । ଏକାନ୍ତେ ସ୍ଥାନେ ତୋଳି ବାଳୀ ।୩୯।
ତୋତେ ଲେଖିଲା ଏକ ମୂର୍ତି । ଯେସନେ ମଦନ ଆକୃତି ।୪୦।
ସ୍ୱେ[୨] ଅନ୍ତେ ମକର ଗୋଟିଏ । ଗଢ଼ି ଥୋଇଲା ତୋର ପ୍ରାଏ ।୪୧।
ସାଜି ତା ପୁଷ୍ପ ଧନୁ ଶର । ତା ଆଣି ଦେଲା ବାମକର ।୪୨।
ନୂଆ ଆମ୍ବ ବକୁଳ ଆଣି । ନାରାଜ ବୋଲି ଦେଲା ପାଣି ।୪୩।
ପାଦତଳେ ପ୍ରଣାମ[୩] କରି । ପ୍ରତିପଦେ ବୋଲଇ ବାଳୀ ।୪୪।

ଗୀତ -

*ପ୍ରତିପଦମିଦମପି ନିଗଦତି ମାଧବ ! ତବ ଚରଣେ ପତିତାହମ୍ ।*
*ତ୍ୱୟି ବିମୁଖେ ମୟି ସପଦି ସୁଧାନିଧିରପି କୁରୁତେ ତନୁଦାହମ୍ ॥୬॥*

ଅର୍ଥ -

ମାଧବ ତବ ଚରଣରେ । ପଡ଼ିଲି ରକ୍ଷାକର ମୋରେ ।୪୫।
ତୁ ମୋତେ ବିମୁଖ ହୁଅନ୍ତେ[୪] । ସୁଧାନିଧି ଯେ ନିଶାଗତେ[୫] ।୪୬।
ଗତି ଅଭାବେ ସେ ମୋହର । ନିରତେ ଦହୁଛି ଶରୀର ।୪୭।

ଗୀତ -

*ଧ୍ୟାନଲୟେନ ପୁରଃ ପରିକଳ୍ପ୍ୟ ଭବନ୍ତମତୀବ ଦୁରାପମ୍ ।*
*ବିଲପତି ହସତି ବିଷୀଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପମ୍ ॥୭॥*

ଅର୍ଥ -

ଆର କଥାଏ ଶୁଣ ହରି । ରାଧିକା ତୋତେ ଧ୍ୟାନ କରି ।୪୮।
କଳ୍ପନା କରି ହୃଦଗତେ । ଆଗରେ ଥିଲା ପ୍ରାଏ[୬] ପ୍ରତେ ।୪୯।
ଦେଖିଲା ପ୍ରାଏ[୭] କରି ବାଳୀ । କହଇ ବଚନ ବିରୋଳି ।୫୦।

---

୧. ଙ. ହୋଅ
୨. ଙ. ଏ
୩. ଚ. ପ୍ରଣମ
୪. ଙ. ହୋଅନ୍ତେ
୫. ଖ. ନିଶାପତେ
୬. ଖ. ପ୍ରାୟେ
୭. ଖ. ପ୍ରାୟେ

| | | | | |
|---|---|---|---|---|
| ବୋଲଇ ଅତି ସ୍ନେହ ଦୁଃଖେ | । | ତୁମ୍ଭଙ୍କୁ ପାଇଁ ପଦ୍ମମୁଖେ | ।୫୧। |
| କ୍ଷଣକେ କରଇ ରୋଦନ | । | କ୍ଷଣକେ ହସଇ ବଦନ | ।୫୨। |
| କ୍ଷଣକେ ବିଷାଦ ତା ମତି | । | କ୍ଷଣକେ ଖଣ୍ଡିତ ଯୁବତୀ | ।୫୩। |
| ତାପ ଯେ କ୍ଷଣକେ ଛାଡ଼ଇ | । | କ୍ଷଣକେ ଅନୁଆନଂ[୧] ହୋଇ | ।୫୪। |

ଭଣିତା -

*ଶ୍ରୀ ଜୟଦେବଭଣିତମିଦମଧିକଂ ଯଦି ମନସା ନଟନୀୟମ୍ ।*
*ହରିବିରହାକୁଳବଲ୍ଲବଯୁବତିସଖୀବଚନଂ ପଠନୀୟମ୍ ॥୮॥*

ଆବାସୋ ବିପିନାୟତେ ପ୍ରିୟସଖୀମାଳାପି ଜାଳାୟତେ
ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଳାକଳାପାୟତେ ।
ସାଽପି ତ୍ୱଦ୍ବିରହେଣ ହନ୍ତ ହରିଣୀରୂପାୟତେ ହା କଥଂ
କନ୍ଦର୍ପୋଽପି ଯମାୟତେ ବିରଚୟଞ୍ଛାର୍ଦ୍ଦୂଳବିକ୍ରୀଡ଼ିତମ୍ ॥ ଶ୍ଲୋକ-୨୫॥

ଅର୍ଥ -

| | | | |
|---|---|---|---|
| ତୋର ବିରହେ ବନମାଳୀ | । | ମୃଗୀ ରୂପ ଧରିଛି ବାଳୀ | ।୫୫। |
| କାମଦେବ ହିଁ ଯମ ପ୍ରାଏ[୨] | । | ଆଚରି ଅଛି ଆସି ତାସ୍ୱେ | ।୫୬। |
| ଆବାସ ଗୃହକୁ ଯେ କହି | । | ସେ ତାକୁ ବନ ଅଛି ହୋଇ | ।୫୭। |
| ଛନ୍ତି ଯେ ପ୍ରିୟ ସଖୀମାନେ | । | ଜାଲ ବେଢ଼ିଲା ପ୍ରାୟ ମଣେ | ।୫୮। |
| ତାପ ନିଃଶ୍ୱାସ ବହିବାରେ | । | ଦାବାଗ୍ନି ପ୍ରାୟେକ ଆଚରେ[୩] | ।୫୯। |
| ମଦନ ବ୍ୟାଧି[୪] ରୂପ ଧରି | । | ଗୁଣ ଟଙ୍କାରେ ନାଦ କରି | ।୬୦। |
| କୋକିଳ ଶାର୍ଦ୍ଦୂଳ ପରାୟେ | । | କ୍ରୀଡ଼ନ୍ତେ ପାଉଅଛି ଭୟେ | ।୬୧। |
| ହରଣୀ[୫] ସଂକଟ ଶ୍ରୀବଛି | । | ଆଜ ମୋ ସଖୀକି ପଡ଼ିଛି | ।୬୨। |
| ଆକୁଳ ହୋଇ ତେଣୁ ଚିତ୍ତେ | । | ତୋତେ ଲୋଡ଼ଇ ଅବିରତେ | ।୬୩। |
| ମଦନ ଶରଜାଳେ ତାର | । | ତନୁ ହୋଇଛି ବିକରାଳ[୬] | ।୬୪। |

---

୧. ଖ. ଅନୁଧ୍ୟାନ
୨. ଖ. ପ୍ରାୟେ
୩. କ. 'ବିଚାରେ' ସଂଶୋଧନ ହୋଇ 'ଆଚାରେ' ଲେଖା ଯାଇଛି । ଖ. ବିଚାରେ
୪. ଖ. ବ୍ୟାଧ
୫. ଖ. ହରିଣ
୬. ଖ. ତନୁ ତା ହୋଇଛି ବରାଳ

ତୋ ନାମ ସୁମରୁଛି[1] ଯେଣୁ । ଜୀବନ ଅଛି ତାର ତେଣୁ ।୬୫।
ମୋ ସଖୀ କେମନ୍ତେ ବଞ୍ଚିବ । ସେ କଥା କର ହେ ମାଧବ ।୬୬।
ମଦନ ସଂକଟରୁ ତ୍ରାହି । କରିବା ତାକୁ ଭାବଗ୍ରାହୀ ।୬୭।
ତୋ ପାଦ ବିନୁ ଭଗବାନ । ମୋ ସଖୀ ନ ଜାଣଇ ଆନ ।୬୮।
ସୁଜନେ ସ୍ନେହେ ଦିଅ ଚିତ୍ତ । ହୃଦରେ ସୁଖ ହୋଉ[2] ଜାତ ।୬୯।
ଅଧିକ କରି ଯେବେ ହରି । ଚରଣ ଲୋଡ଼ିବ ସୁମରି ।୭୦।
ଏମନ୍ତ ହୋଇଲେ ସୁକୃତ[3] । ପଢୁଣ ଥିବ ଅବିରତ ।୭୧।
ଯେ ପ୍ରେମ ଭକ୍ତିର ବିଚାର । ସେ ଗୀତେ ଅଛଇ ଅପାର ।୭୨।
ପୁଣି ସେ କେମନ୍ତ ଅଟଇଂ । ହରି ବିରହ ଛନ୍ତି ହୋଇଂ ।୭୩।
ବଲ୍ଲବ ଯୁବତି ଯେ ରାଧା । ସେହି ମଦନ ଶରେ ବାଧା ।୭୪।
ସଖୀ ବଚନେ ଯୁକ୍ତ ଆର । ଗ୍ରନ୍ଥମାନଙ୍କ ପରେ ସାର ।୭୫।
ଦଶମ[4] ଗାଥା ହୋଏ ଶେଷ । ଧ୍ରୁବ ବଚନ ଏ ପ୍ରକାଶ ।୭୬।
ଯେ ଜୟଦେବର କାହାଣୀ । ଗୀତଗୋବିନ୍ଦ ଅର୍ଥ ବାଣୀ ।୭୭।
ଅର୍ଥଗୋବିନ୍ଦ ଏ ପ୍ରକାଶ । ବୋଲେ ବଜରି ମୂଢ଼ ଦାସ ।୭୮।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ବିରହବର୍ଣ୍ଣନେ*
*ମୂଢ଼ବଜରିଦାସେନ କୃତୌ ନାମ*
*ଦଶମୋଽଧ୍ୟାୟଃ ।*

---

୧. କ. ଶୁମରିଛି
୨. ଖ. ହେଉ
୩. କ. ଏ ବ୍ରତ
୪. କ. ନବମ

# ଏକାଦଶ ଅଧ୍ୟାୟ

[ରାଗଲକ୍ଷଣମ୍ - ଆସ୍ଫୋଟନୋବିସ୍ଫୁରରୋମହର୍ଷୋ ନିବଦ୍ଧଘନସ୍କନ୍ଧବିଶାଳବାହୁଃ ।
ପ୍ରାଂଶୁଃ ପ୍ରଚଣ୍ଡଦ୍ୟୁତିରିନ୍ଦୁଗୌରୋ ଦେଶାଖ୍ୟରାଗଃ କିଳ ମଲ୍ଲରାଜଃ ॥]

(ଦେଶାକ୍ଷରାଗେଣ ଗୀୟତେ)

ଗୀତ -

*ସ୍ତନବିନିହିତମପି ହାରମୁଦାରମ୍ ।*
*ସା ମନୁତେ କୃଶତନୁରିବ ଭାରମ୍ ।*
*ରାଧିକା ବିରହେ ତବ କେଶବ ॥ ଧ୍ରୁବମ୍-୧ ॥*

ଅର୍ଥ -

ସୁଜନେ ହୋଇଣ ଆନନ୍ଦ । ଶୁଣିମାଂ[୧] ଶ୍ରୀ ଅର୍ଥଗୋବିନ୍ଦ ।୧।
ଏଣେ ଘେନେଇ ଚିତ୍ତ ଯାର । ସେ ହୋଯ୍ସେ[୨] ଭବଜଲୁ ପାର ।୨।
ଦେଶାକ୍ଷରାଗେଣ ଗାଥାର । ଅର୍ଥ ଶୁଣିମା ସାଧୁ ନର ।୩।
ଶ୍ରୀକୃଷ୍ଣ ମୁଖ ଚାହିଁ ଦୂତୀ । ବୋଲଇ ଶୁଣିମା ଶ୍ରୀପତି ।୪।
ମୋହର ସଖୀ ଯେ ରାଧିକା । ବିରହେ ବସିଅଛି ଏକା ।୫।
ତବ ବିଛେଦେ ଚନ୍ଦ୍ରମୁଖୀ । ବହୁତ ହୋଇଅଛି ଦୁଃଖୀ ।୬।
ସ୍ତନ ଯେ କୁଚକୁମ୍ଭ ତାର । ଉପରେ ପଡ଼ିଛି ଯେ ହାର ।୭।
ତା ଭାର ପ୍ରାୟେ ମଣୁଅଛି । ବିରହ ବଶେନ ମୃଗାକ୍ଷି ।୮।
କେଶବ ତୋର ଅଭାବରେ । ରାଧିକା ମନ୍ମଥ ଶରେ[୩] ।୯।
ବିରହ ହୋଇ ଅନୁକ୍ଷଣେ । ସୁଖ ଭୋଗହିଁ ପିଡା ମଣେ ।୧୦।

୧. ଖ. ଶୁଣିବା
୨. ଢ. ହୋନ୍ତି
୩. ଝ. ସ୍ୱରେ

ଗୀତ -

ସରସମସୃଣମପି ମଳୟଜପଙ୍କମ୍ ।
ପଶ୍ୟତି ବିଷମିବ ବପୁଷି ସଶଙ୍କମ୍ ॥୨॥

ଅର୍ଥ -

ମଳୟ ପଙ୍କ ଯାକୁ କହି । ଅର୍ଥରେ ଚନ୍ଦନ ଅଟଇ ।୧୧।
ଯଦି ଶୀତଳ ଜଳେ ଗୋଳି । ତାର ଶରୀରେ ନେଇ ବୋଳି ।୧୨।
ବିଷ ପରାଏ ମଣି ଚିତ୍ତେ । ଚମକି ପଡ଼ଇ ନିରତେ ।୧୩।

ଗୀତ -

ଶ୍ୱସିତପବନମନୁପମପରିଣାହମ୍ ।
ମଦନଦହନମିବ ବହତି ସଦାହମ୍ ॥୩॥

ଅର୍ଥ -

ଭୋ କୃଷ୍ଣ ଶୁଣିମା ଗୋସାଇଁ । ରାଧିକା ତୋତେ ବାଟ ଚାହିଁ ।୧୪।
ବିସ୍ତାର ନିଶ୍ୱାସ ମୃଗାକ୍ଷି । ଉଷ୍ଣମ କରି ଛାଡୁଅଛି ।୧୫।
ଯେମନ୍ତ[୧] ଲାଗଇ ପରତେ । ଭିତରେ ମଦନ ଦହନ୍ତେ[୨] ।୧୬।
ସନ୍ତପ୍ତ ନିଶ୍ୱାସ ତାହାର । ହୃଦରୁ ହେଉଛି ବାହାର ।୧୭।

ଗୀତ -

ଦିଶି ଦିଶି କିରତି ସଜଳକଣଜାଳମ୍ ।
ନୟନନଳିନମିବ ବିଗଳିତନାଳମ୍ ॥୪॥

ଅର୍ଥ -

ଲୋତକମାନ ଚଉକତି । ପକାଉ ଅଛି ବାଳି ଅତି[୩] ।୧୮।
ଆତଙ୍କେ ଚଉଦିଗେ ଚାହିଁ । ନ ଦେଖ୍ ମୂର୍ଚ୍ଛିତ[୪] ହୁଅଇ ।୧୯।
ନୟନ ପଦ୍ମରୁ ତାହାର । ବହୁଛି ଲୋତକେ[୫] ଯେ ଧାର[୬] ।୨୦।

---

୧. ଖ. ଏମନ୍ତ
୨. ଖ. ଦହତେ
୩. କ. ଯତି
୪. ଖ. ମୂର୍ଚ୍ଛିତ
୫. ଖ. ଲୋତକ
୬. ଖ. ପ୍ରିୟେ ତାହାର

କାହିଁ କାହାର ପ୍ରାୟେ[୧] ହୋଇଁ । ଲୋତକେ ଧାରା[୨] ତା ପଡ଼ଇ[୩] ।୨୧।
ପଦ୍ମପତ୍ରରୁଁ[୪] ଜଳମାନ । ପଡ଼ନ୍ତେ[୫] ଦିଶଇ ଯେସନ ।୨୨।

ଗୀତ -

*ନୟନବିଷୟମପି କିଶଳୟତଳ୍ପମ୍ ।*
*କଳୟତି ବିହିତହୁତାଶବିକଳ୍ପମ୍ ।।୫।।*

ଅର୍ଥ -

ସେ[୬] ସଖି ରାଧିକା ନିକଟେ । ଏକ ପଲ୍ଲବ[୭] ଶଯ୍ୟା[୮] ଘଟେ ।୨୩।
ଶଯ୍ୟାକୁ ଚାହିଁ ମୋର ସଖୀ । ଭୟେ ବୁଜଇ ବେନିଆଖି ।୨୪।
ସେ ତାକୁ ଶତ୍ରୁ[୯] ପ୍ରାୟେ ଦିଶେ । ଅନଳ ଯେସନେ ପ୍ରକାଶେ ।୨୫।

ଗୀତ-

*ତ୍ୟଜତି ନ ପାଣିତଳେନ କପୋଳମ୍ ।*
*ବାଳଶଶିନମିବ ସାୟମଲୋଳମ୍ ।।୬।।*

ଅର୍ଥ -

ତୋର ଅଭାବେ ମୋର ସହି । କପୋଳେ ହସ୍ତ ଅଛି ଦେଇ ।୨୬।
କେମନ୍ତ ପ୍ରାୟେ ପଟାନ୍ତର । ତା ମୁଖ ଦିଶୁଛି ସୁନ୍ଦର ।୨୭।
ବାଳ ଚନ୍ଦ୍ରମା ପ୍ରାୟେ ଦିଶେ । ଦ୍ୱିତୀୟ ଦିନ କି ପ୍ରକାଶେ[୧୦] ।୨୮।

ଗୀତ -

*ହରିରିତି ହରିରିତି ଜପତି ସକାମମ୍ ।*
*ବିରହବିହିତମରଣେବ ନିକାମମ୍ ।।୭।।*

ଅର୍ଥ -

ତୋ ନାମ ନିରନ୍ତରେ ଧରି । ଜପ କରଇ ହରି ହରି ।୨୯।
କାମନା କରିଣ ମୋ ମିତ । ତୋ ବିନୁ ବୋଲଇ ଏମନ୍ତ ।୩୦।
ବିରହୀ ହୋଇବାର ସଲ । ଏହାଉଁ ମରଣ ତ ଭଲ ।୩୧।

---

| | | | | | | | | |
|---|---|---|---|---|---|---|---|---|
| ୧. | ଖ. | ପ୍ରିୟେ | ୫. | ଖ. | ଗଡ଼ନ୍ତେ | ୯. | କ. | ସତ୍ରୁ |
| ୨. | ଖ. | ଧାର | ୬. | ଖ. | ଗୋ | | ଖ. | ଶତ୍ରୁ |
| ୩. | ଖ. | ଗଡ଼ଇ | ୭. | ଖ. | ପଲବ | ୧୦. | ଖ. | ପରକାଶେ |
| ୪. | ଖ. | ପଦ୍ମପତ୍ରୁ | ୮. | ଖ. | ସଯ୍ୟା | | | |

ଗୀତ -

*ଶ୍ରୀଜୟଦେବଭଣିତମିତି ଗୀତମ୍ ।*
*ସୁଖୟତୁ କେଶବପଦମୁପନୀତମ୍ ॥୮॥*

ସ୍ମରାତୁରାଂ ଦୈବତବୈଦ୍ୟହୃଦ୍ୟ ତ୍ୱଦଙ୍ଗସଙ୍ଗାମୃତମାତ୍ରସାଧ୍ୟାମ୍ ।
ବିମୁକ୍ତବାଧାଂ କୁରୁଷେ ନ ରାଧାମୁପେନ୍ଦ୍ରବଜ୍ରାଦପି ଦାରୁଣୋଽସି ॥ ଶ୍ଳୋକ-୨୬॥

ଅର୍ଥ -

ଭୋ କୃଷ୍ଣ ଇନ୍ଦ୍ର ବଜ୍ରପରେ । କଠିଣ ନାହିଁ ଜଗତରେ ।୩୨।
ତାଙ୍କୁ ତୋ ହୃଦୟ କଠିଣ । ହୋଇଲା ନିଶ୍ଚେ ଏ ପ୍ରମାଣ ।୩୩।
ଦେବତା ହୋଇ ବଦ୍ୟ ଅଟୁ । ତୋ ଗଲେ ରାଧା ବ୍ୟାଧି ତୁଟୁ ।୩୪।
ସ୍ମର ଯେ କାମଦେବ ଜ୍ୱାଳା । ତେଣେ ଆରତ ସେ ଅବଳା ।୩୫।
ସେ ତୋର ଅପାଙ୍ଗ ସଙ୍ଗତ[୧] । ସେହି ସେ ହୋଇଲା ଅମୃତ ।୩୬।
ସେ ଯେବେ କରିବେ ତା ପାନ । ସାଧ ହୋଇବେ ବ୍ୟାଧିମାନ ।୩୭।

**କନ୍ଦର୍ପଜ୍ୱରସଂଜ୍ୱରାକୁଳତନୋରାଶ୍ଚର୍ଯ୍ୟମସ୍ୟାଶ୍ଚିରଂ**
**ଚେତଶ୍ଚନ୍ଦନଚନ୍ଦ୍ରମଃ କମଳିନୀ ଚିନ୍ତାସୁ ସଂତାମ୍ୟତି ।**
**କିନ୍ତୁ କ୍ଳାନ୍ତିବଶେନ ଶୀତଳତନୁଂ ତ୍ୱାମେକମେବ ପ୍ରିୟଂ**
**ଧ୍ୟାୟନ୍ତୀ ରହସି ସ୍ଥିତା କଥମପି କ୍ଷୀଣା କ୍ଷଣଂ ପ୍ରାଣିତି ॥ ଶ୍ଳୋକ -୨୭ ॥**

ଅର୍ଥ -

ଏକାନ୍ତ ସ୍ଥାନେ ବସି ବାଳୀ । ନିରତେ ତୋର[୨] ଧ୍ୟାନ କରି ।୩୮।
ତୁହି ସେ ଏକ ପ୍ରିୟ ଭୃଥା । ତୋ ବିନୁ ନାହିଁ ଅନ୍ୟ କଥା ।୩୯।
ତୋର ବିଚ୍ଛେଦେ କଷ୍ଟେ ରାଧା । ପାଉଛି ହୃଦେ ବଡ଼ ବାଧା ।୪୦।
ଚନ୍ଦନ ଅଗ୍ନି ପ୍ରାଏ[୩] ମଣେ । ଚନ୍ଦ୍ରମା ବିଷ ବୋଲି ଗଣେ ।୪୧।
କୋମଳ ପଦ୍ମପତ୍ର[୪] ଚାହିଁ । ବସାଇ ଖଣ୍ଡେ ଦୂରେ ଯାଇଁ ।୪୨।

---

୧. ଖ. ଏ ତୋର ଅଙ୍ଗର ସଙ୍ଗତ
୨. ଖ. ତୋତେ
୩. ଖ. ପ୍ରାୟେ
୪. ଖ. ପତ୍ର

କନ୍ଦର୍ପ ଜ୍ୱରେ କରି ତାର । ଆକୁଳ ହେଉଛି ଶରୀର ।୪୩।
ତୁ ଯେଣୁ ସ୍ନେହଂ ପ୍ରିୟ ତାର । ତୋତେ ସେ ମଣିଛି ଶୀତଳ ।୪୪।

**କ୍ଷଣମପି ବିରହଃ ପୁରା ନ ସେହେ**
**ନୟନନିମୀଳନଖିନ୍ନୟା ମୟା ତେ ।**
**ଶ୍ୱସିତି କଥମସୌ ରସାଳଶାଖାଂ**
**ଚିରବିରହେଣ ବିଲୋକ୍ୟ ପୁଷ୍ପିତାଗ୍ରାମ୍ ॥ ଶ୍ଳୋକ-୨୮ ॥**

ଅର୍ଥ -

ଭୋ କୃଷ୍ଣ ଦେବ ତାର ଦେହ । କ୍ଷଣେ ନ ସହେ ତୋ ବିରହ ।୪୫।
ଏବେ ବିରହ ହୋଇଁ[୨] ବାଳୀ । ଚିନ୍ତାଯେ[୩] ହୋଇଛି ବିକଳୀ ।୪୬।
ରସାଳ ଶାଖାଂ[୪] ଯେ ବଉଳ । ତା ଦେଖି ହୋଉଛି ବିକଳ ।୪୭।
ଚିର ବିରହୀ ସଖୀ ମୋର[୫] । ଯେଣୁ ପୀଡ଼ଇ[୬] ଅଙ୍ଗେ ମାର ।୪୮।
ବୁଝ ତୁ ପ୍ରାଣନାଥ ତାର । କହିଲି ଦୋଷ ନାହିଁ ମୋର[୭] ।୪୯।
ଦେଖିଲା କଥା ମୁଁ କହିଲି । ବିଳମ୍ବ ନ କରି ଅଇଲି ।୫୦।
ଦୂତିକା ରାଧିକା ସନ୍ଦେଶ । କରିଲା ଶ୍ରୀକୃଷ୍ଣର ପାଶ[୮] ।୫୧।
ଶୁଣି ବିରହ ବନମାଳୀ । ଲୋଡ଼ନ୍ତି ରାଧିକା ସୁନ୍ଦରୀ ।୫୨।
ସୁଜନେ ଏ ଗୀତ ତୁମ୍ଭର । ନିରତେ ହୋଉ ସୁଖକର ।୫୩।
କେଶବ ପାଦ ସୁମରଣ । କରନ୍ତା ଲୋକଙ୍କୁ କାରଣ ।୫୪।
ଗାଥା ଯେ ଏକାଦଶ ଶେଷ । ଧ୍ରୁବ ବଚନ ଏ ପ୍ରକାଶ ।୫୫।
ମୂଢ଼ ବଳରି ଦାସ ହରି । ଚରଣ ଲୋଡ଼ଇ ଫୁକାରି ।୫୬।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ*
*ମୂଢ଼ ବଳରିଦାସେନ କୃତୌ ସ୍ନିଗ୍ଧମାଧବୋ ନାମ*
*ଚତୁର୍ଥଃ ସର୍ଗଃ ।*

---

୧. ଖ. ଏବ
୨. ଖ. ହୋଇ
୩. ଖ. ଚିନ୍ତାଏ
୪. ଚ. ସାଖା
୫. ଖ. ତୋର
୬. ଖ. ଡରଇ
୭. ଖ. ତୋର
୮. କ. ପାସ, ଖ. ପାସ

# ଦ୍ୱାଦଶ ଅଧ୍ୟାୟ

ଅହମିହ ନିବସାମି ଯାହି ରାଧା -
ମନୁନୟ ମଦ୍ୱଚନେନ ଚାନୟେଥାଃ ।
ଇତି ମଧୁରିପୁଣା ସଖୀ ନିଯୁକ୍ତା
ସ୍ୱୟମିଦମେତ୍ୟ ପୁନର୍ଜଗାଦ ରାଧାମ୍ ॥ ଶ୍ଳୋକ-୨୯ ॥

ଅର୍ଥ -

ସୁଜନେ ଶୁଣ ଏକ ଚିତ୍ତେ । ଶୋକ ବିରାଡ଼ି[୧] ଗାଥା ଅର୍ଥେ ।୧।
ରାଧା ବିରହ ଶୁଣି ହରି । ବୋଲନ୍ତି ଶୁଣ ସହଚରି ।୨।
ଏ କୁଞ୍ଜ ଲତାରେ ମୁଁ ବସି । ଥାଇଁ, ତୁ ଯାଅ ଗୋ ସୁକେଶି ।୩।
ମୋର ବିନୟମାନ କହିଁ । ବହନ ଘେନି ଆସ ଯାଇଁ ।୪।
ଏମନ୍ତ କୃଷ୍ଣ ମୁଖୁ ଶୁଣି । ଚଳିଲା ଦୂତୀ ତତକ୍ଷଣି ।୫।
ରାଧିକା ଏକାନ୍ତ ସ୍ଥାନର । ବସିଛି ନିକୁଞ୍ଜ ଭିତର ।୬।
ଦୂତିକା ଶିରେ ଦେଇ କର । ବୋଲଇ ଶୁଣ ସଖି ମୋର ।୭।

[ରାଗଲକ୍ଷଣ - ବିନୋଦୟନ୍ତୀ ଦୟିତଂ ସୁକେଶୀ ସୁକଙ୍କଣା ଚାମରଚାଳନେନ ।
କର୍ଣ୍ଣେ ଦଧାନା ସୁରପୁଷ୍ପଗୁଚ୍ଛଂ ବରାଙ୍ଗନେୟଂ କଥିତା ବରାଡ଼ୀ ॥]

(ପଞ୍ଚମବରାଡ଼ୀରାଗେଣ ଗୀୟତେ)

*ବହତି ମଳୟସମୀରେ ମଦନମୁପନିଧାୟ ।*
*ସ୍ଫୁଟତି କୁସୁମନିକରେ ବିରହିହୃଦୟଦଳନାୟ ।*
*ସଖି ହେ ସୀଦତି ତବ ବିରହେ ବନମାଳୀ ॥ ଧ୍ରୁବମ୍-୧ ॥*

---

୧. କ. ସୋକ ବରାଡ଼ୀ
ଖ. ବେତବ ଖଡ଼ୀ

ଅର୍ଥ -

ତବ ବିରହେ ବନମାଳୀ । ବିଷାଦେ ହୋଇ ବସି ଭାଳି ।୮।
ଯେଣୁ ସେ ହୋଇଛି ବିଷାଦ । ତହିଁର କହଇ ପ୍ରମାଦ ।୯।
କାମଦେବଙ୍କୁ ଘେନି ସହେ । ମଳୟ ପବନ ଗୋ ବହେ ।୧୦।
ପୁଷ୍ପମାନେହେଁ ଲତାଙ୍କରେ । ଫୁଟୁଅଛନ୍ତି ନିରନ୍ତରେ ।୧୧।
ସେମନ୍ତ ଦେଖିଣ ମାଧବ । ମନରେ ବହୁତ ବିଷାଦ ।୧୨।
ପୁଷ୍ପ ଫୁଟିବା ଦେଖି ହରି । ଏମନ୍ତ ବୋଲଇ ମୁରାରି ।୧୩।
ବିରହୀମାନଙ୍କ ହୃଦୟ । ଦଳିବା ପାଇଁ ଏ ନିଚୟ ।୧୪।

ଗୀତ -

*ଦହତି ଶିଶିରମୟୂଖେ ମରଣମନୁକରୋତି ।*
*ପତତି ମଦନବିଶିଖେ ବିଲପତି ବିକଳତରୋଽତି ॥୨॥*

ଅର୍ଥ -

ତଥିରେ ଆଉ ପରମାଦେ । ଦେଖି ଅଇଲି ସଖି ହାଦେ ।୧୫।
ଚନ୍ଦ୍ର କିରଣେ ପଡ଼ିବାରେ । ମରଣ ମନରେ ବିଚାରେ[୧] ।୧୬।
ମଦନ ବସାଇଣ ବାଣ । ତଥି ଉପରେ ବିନ୍ଧେ[୨] ଟାଣ ।୧୭।
ସହି ନ ପାରି[୩] ହୃଷୀକେଶୀ[୪] । ରୋଦନ କରୁଅଛି ବସି ।୧୮।

ଗୀତ -

*ଧ୍ୱନତି ମଧୁପସମୂହେ ଶ୍ରବଣମପି ଦଧାତି ।*
*ମନସି ବଳିତବିରହେ ନିଶି ନିଶି ରୁଜମୁପଯାତି ॥୩॥*

ଅର୍ଥ -

ଭ୍ରମରମାନେ ସେ ଲତାରେ । ଧ୍ୱନି କରନ୍ତି ସମୂହରେ ।୧୯।
କର୍ଣ୍ଣକୁ କଟୁ ପ୍ରିୟେ ହୋଇ । ସହି ନ ପାରି ଭାବଗ୍ରାହୀ ।୨୦।
କର୍ଣ୍ଣ ଯୁଗଳେ କର ବେନି । ବହନେ ବୁଜଇ ସଜନୀ ।୨୧।
ବିରହେ ବିଚଳିତ ମନ । ଦିନକୁ ଦିନ ହୋଏ ଖିନ୍ନ ।୨୨।

---

୧. କ. ମୁନରେ
୨. ଖ. ବନ୍ଧେଣ
୩. ଖ. ପାଇ
୪. କ. ହୃଷିକେଶି, ଙ. ମୁକେଶୀ

ଗୀତ -

*ବସତି ବିପିନବିତାନେ ତ୍ୟଜତି ଲଳିତଧାମ ।*
*ଲୁଠତି ଧରଣିଶୟନେ ବହୁ ବିଳପତି ତବ ନାମ ॥୪॥*

ଅର୍ଥ -

| | | | |
|---|---|---|---|
| ମୋ କଥା ଶୁଣ ଗୋ ସୁନ୍ଦରୀ | । | ତୋତେ ପାଇବାଂ[1] ଅର୍ଥେ ହରି | ।୨୩। |
| ସଦନେ[2] ତେଜ୍ୟା କରି ଆସି | । | ବିପିନ ମଧ୍ୟେ ଅଛି ବସି | ।୨୪। |
| ଧରଣୀ ପରେ ଅଛି ଶୋଇ | । | ତୋ ବିନୁ ଅନ୍ୟ ନ ରୁଚଇ[3] | ।୨୫। |
| ତୋ ନାମ ଧରି ହୃଦଗତେ | । | ରୋଦନ କରଇ ନିରତେ | ।୨୬। |

ଭଣିତା -

*ଭଣତି କବିଜୟଦେବେ ବିରହବିଳସିତେନ ।*
*ମନସି ରଭସବିଭବେ ହରିରୁଦୟତୁ ସୁକୃତେନ ॥୫॥*

ପୂର୍ବଂ ଯତ୍ର ସମଂ ତ୍ୱୟା ରତିପତେରାସାଦିତା ସିଦ୍ଧୟ-
ସ୍ତସ୍ମିନ୍ନେବ ନିକୁଞ୍ଜମନ୍ମଥମହାତୀର୍ଥେ ପୁନର୍ମାଧବଃ ।
ଧ୍ୟାୟଂସ୍ତ୍ୱାମନିଶଂ ଜପନ୍ନପି ତବୈବାଳାପମନ୍ତ୍ରାକ୍ଷରଂ
ଭୂୟସ୍ତତ୍କୁଚକୁମ୍ଭନିର୍ଭରପରିରମ୍ଭାମୃତଂ ବାଞ୍ଛତି ॥ ଶ୍ଳୋକ-୩୦ ॥

ଅର୍ଥ -

| | | | |
|---|---|---|---|
| ପୂର୍ବେ ତୋ ସଙ୍ଗେ ବନମାଳୀ | । | ଯେଉଁ ଲତାରେ କଲା କେଳି | ।୨୭। |
| ସେବେ[4] ସେ ଲତା ଗୃହେ ଯାଇଁ | । | ମଦନ ବାଣେ[5] ପୀଡ଼ା ପାଇ | ।୨୮। |
| ବସିଅଛନ୍ତି[6] ଧ୍ୟାନ କରି | । | ମାଧବ ତୋ ଗୁଣ ସୁମରି | ।୨୯। |
| ତା କୁଚକୁମ୍ଭ ଆଲିଙ୍ଗନ | । | ଶ୍ରଦ୍ଧା କରିଛି ଭଗବାନ[7] | ।୩୦। |
| ଗାନ କରିବା ଅର୍ଥେ ଚିତ୍ତେ | । | ବାଞ୍ଛା ସେ କରଇ ନିରତେ | ।୩୧। |
| ସେମନ୍ତ[8] ହୋଇ ତୋତେ ହରି | । | ଅନୁବରତେ ଧ୍ୟାନ କରି | ।୩୨। |

୧. ଖ. ଗାଇବା
୨. ଖ. ସଦନ
୩. ଖ. ଜାଣଇ
୪. ଖ. ଏବେ
୫. ଖ. ବାତେ
୬. ଖ. ବାସିଅଛି ତ
୭. ଖ. ହୋଇଲା ଅମୃତ ଯେସନ
୮. ଖ. ଏମନ୍ତ

ତୋ ନାମ ମନ୍ତ୍ର କରି ସହି । ତା ଅଙ୍ଗ ଯନ୍ତରେ ବସାଇ ।୩୩।
ଧରି ଜପଇ ନିରନ୍ତରେ । ତୋ ମୁଖ ଦେଖିବା ଅର୍ଥରେ ।୩୪।
ଯହିଁ ଅଛନ୍ତି ବନମାଳୀ । ସେ ସ୍ଥାନ କଥା ଶୁଣ ବାଳୀ ।୩୫।
କାମ କଳାକୁ ତୀର୍ଥ ଜାଣି । ସ୍ୱଭାବେ ହୋଇଛି ମିତଣି ।୩୬।
ତା ମନ୍ତ୍ର ସିଦ୍ଧ୍ୟ[୧] ହେଲା ଆସି । ତୁ ଆଲିଙ୍ଗନ ସଖି ଦେସି[୨] ।୩୭।
ଭୋ ରାଧେ ସେ ତୋହର ପତି । ତୁ ତାର ଅଟୁ ଗୋ ଯୁବତି ।୩୮।
ପ୍ରସନ୍ନ ବାରେ ତାକୁ ହୋଅ । ବିରହ ବେଦନା ଜଣାଅ ।୩୯।
ଦ୍ୱାଦଶ[୩] ଗାଥା ଏହୁ ଶେଷ । ଧ୍ରୁବ ବଚନ ଏ ପ୍ରକାଶ ।୪୦।
ସୁଜନେ ହୋଇଣ ସୋରେହା । ନିରତେ ପଢୁଥାଅ ଏହା[୪] ।୪୧।
ଯେ ପ୍ରାଣୀ ପୂର୍ବ ଭାଗ୍ୟ ଥିବ । ଏ କାବ୍ୟ ନିରତେ[୫] ପଢ଼ିବ ।୪୨।
ଏ ପୁଣି ଅଟଇ କେମନ୍ତ[୬] । ବିରହ କ୍ରୀଡ଼ାରେ ଭଣିତ ।୪୩।
ହୃଦସ୍ଥ କରଇ ନିର୍ମଳ । ଯେ ବାଞ୍ଛା ଦିଅଇ ସେ ଫଳ ।୪୪।
ହରି ଚରଣେ ପୁଣ୍ୟ[୭] ନିତ୍ୟେ । ବଢ଼ାନ୍ତି[୮] ଅଟଇ ଯୁଗତେ ।୪୫।
ଗୀତଗୋବିନ୍ଦ ଅର୍ଥମାନ । ଅର୍ଥଗୋବିନ୍ଦ ଏହିଂ[୯] ଲେଖନ ।୪୬।
ସଂସାର ସାଗରକୁ ସାର[୧୦] । ଏ ନାବେ ବସି ହୁଅ[୧୧] ପାର ।୪୭।
ଧ୍ରୁବ[୧୨] ବଚନ ପରକାସ[୧୩] । ବୋଲେ ବଜରି ମୂଢ଼ ଦାସ ।୪୮।

ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ମନ୍ତ୍ରାବଳିବର୍ଣ୍ଣନେ
ମୂଢ଼ବଜରିଦାସେନ କୃତୌ ନାମ
ଦ୍ୱାଦଶୋଽଧ୍ୟାୟଃ ।

---

୧. ଖ. ସିଦ୍ଧ
୨. ଖ. ଦେଶୀ
୩. କ. ଏହ୍ବାଦସ
ଖ. ଏକାଦଶ
୪. ଖ. ପଢୁଥାନ୍ତା ଏହା
୫. ଖ. ନିରତେ ଏ ବାବ୍ୟ
୬. ଖ. ଏମନ୍ତ
୭. କ. ପୁଣ୍ୟ
୮. ଖ. ବଶନ୍ତା
୯. ଖ. ଏ
୧୦. ଖ. ମୋର
୧୧. ଖ. ହୋନ୍ତା
୧୨. କ. ଧ୍ରୀବ
୧୩. ଖ. ଏ ପ୍ରକାଶ

# ତ୍ରୟୋଦଶ ଅଧ୍ୟାୟ

(ଗୁର୍ଜ୍ଜରୀ ରାଗେଣ ଗୀୟତେ)

*ରତିସୁଖସାରେ ଗତମଭିସାରେ ମଦନମନୋହରବେଶମ୍*
*ନ କୁରୁ ନିତମ୍ବିନି ଗମନବିଲମ୍ବନମନୁସର ତଂ ହୃଦୟେଶମ୍ ।*
*ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ*
*(ପୀନପୟୋଧରପରିସରମର୍ଦ୍ଦନଚଞ୍ଚଳକରଯୁଗଶାଳୀ) ॥ ଧ୍ରୁବମ୍-୧ ॥*

ଅର୍ଥ -

ସୁଜନେ ଶୁଣ ଏକଂ[୧] ମନେ । ଗୀତଗୋବିନ୍ଦ ଅର୍ଥମାନେ ।୧।
ଦୂତିକା ରାଧିକା ଛାମୁର । କହଇ ବଚନ ମଧୁର ।୨।
ଗୁର୍ଜ୍ଜରୀରାଗେଣ ଗାଥାର[୨] । ଅର୍ଥଯେ ଏକ[୩] ମନ କର ।୩।
ଭୋ ସଖି ଅଙ୍ଗ ଅଙ୍ଗ ହୋଇଁ । ମଳୟ ପବନ ବହଇ ।୪।
ଯେମନ୍ତ ଯମୁନାର ତୀରେ । ଅଛି ଯେ ବନ ତା ମଧ୍ୟରେ[୪] ।୫।
ବସି ଅଛନ୍ତି ବନମାଳୀ । ଦେଖି ମୁଁ ଆଇଲି ଗୋ ବାଳୀ ।୬।
ସେ ବନ ହୋଇଛିଂ[୫] କେମନ୍ତ । ତୋ ଆଗେ କହଇ ଏବନ୍ତ ।୭।
ରତି କ୍ରୀଡ଼ାକୁ ଅତି ସାର । ଅଭିସାରକୁ ରମ୍ୟକର ।୮।
ମଦନ ମନୋହର ବେଶ । ଧରି ଅଛନ୍ତି[୬] ହୃଷୀକେଶ[୭] ।୯।
ଗମନେଂ[୮] ବିଳମ୍ବ ନ କର । ହେ ନିତମ୍ବିନି ବେଗେ ଚଳ ।୧୦।
ତୋ ହୃଦ ଈଶ୍ୱର ସେ ହରି । ତାହାଙ୍କୁଂ[୯] ଦେଖ ମନ ସରି ।୧୧।

---

୧. ଖ. ଏକ
୨. ଖ. ଆଧାର
୩. ଖ. ଏକ
୪. ଖ. ଲତା ମଧ୍ୟରେ
୫. ଚ. ହୋଇଛି
୬. ଖ. ଅଛଇ
୭. ଙ. ହୃଷିକେଷ
୮. ଖ. ଗମନ
୯. ଖ. ତାହାକୁ

ଗୀତ -

*ନାମସମେତଂ କୃତସଙ୍କେତଂ ବାଦୟତେ ମୃଦୁବେଣୁମ୍ ।*
*ବହୁ ମନୁତେ ନନୁ ତେ ତନୁସଙ୍ଗତପବନଚଳିତମପି ରେଣୁମ୍ ॥୨॥*

ଅର୍ଥ-

ତୋ ସଙ୍ଗେ[୧] ଲାଗିଣ ପବନ । ବହନ୍ତେ ଉଡ଼େ ଧୂଳିମାନ ।୧୨।
ସେ କୃଷ୍ଣ ହୃଦରେ ଲେପନ୍ତେ[୨] । ପିଡା[୩] ଟା ମଣଇ ବହୁତେ ।୧୩।
ବୋଲଇ ରାଧିକା ହୃଦସ୍ଥ । ସୁବାସ ଗନ୍ଧ ଏ ନିଶ୍ଚୟ[୪] ।୧୪।
ତୋ ନାମ ଧରି ମୃଦୁ କରି । ମୁରଲୀ ବଜାଉଛି ହରି ।୧୫।
ସଙ୍କେତ କରିଅଛି ଆଗ[୫] । ବୋଲଇ[୬] ଅଛି ମୁଁ ଏଠାର ।୧୬।

ଗୀତ-

*ପତତି ପତତ୍ରେ ବିଚଳିତପତ୍ରେ ଶଙ୍କିତଭବଦୁପଯାନମ୍ ।*
*ରଚୟତି ଶୟନଂ ସଚକିତନୟନଂ ପଶ୍ୟତି ତବ ପନ୍ଥାନମ୍ ॥୩॥*

ଅର୍ଥ -

ପତତ୍ରୀ[୭] ପକ୍ଷିଙ୍କି[୮] ଯେ କହି । ସେ ଉଡ଼ି ପଡ଼ନ୍ତେ ଗୋ ସହି ।୧୭।
ସେ ବନେ ପତ୍ରେ[୯] ଖଡ଼ ଖଡ଼ । କରନ୍ତେ ଚମକଇ ବଡ଼[୧୦] ।୧୮।
ତୋର ଆସିବା ପ୍ରାଏ ମଣି । ଚକିତ ହୋଇ ପୁଣ ପୁଣି ।୧୯।
ଚାରିଆଡ଼କୁ ଚାହିଁ ହରି । ଶଯ୍ୟା[୧୧] ରଚ୍ଛଇ[୧୨] ବେଗ୍ର[୧୩] କରି ।୨୦
ନ ଯିବା ଦେଖି ତୋର ସଖି । ଗମନ ପଥୁକୁ[୧୪] ବିଲୋକି ।୨୧।

ଗୀତ -

*ମୁଖରମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିସୁଲୋଳମ୍ ।*
*ଚଳ ସଖି କୁଞ୍ଜଂ ସତିମିରପୁଞ୍ଜଂ ଶୀଳୟ ନୀଳନିଚୋଳମ୍ ॥୪॥*

---

୧. ଖ. ଅଙ୍ଗେ
୨. ଖ. ଲାଗନ୍ତେ
୩. ଗ. ପୀଡ଼ା
୪. ଛ. ନିଚୟ
୫. ଖ. ତାର
୬. ଖ. ବୋଲଇ
୭. କ. ଖ. ପତତ୍ରି
୮. ଖ. ପକ୍ଷୀ
୯. ଖ. ପତ୍ର
୧୦. କ. ଦଡ଼
୧୧. କ. ସେଯ୍ୟା
୧୨. ଖ. ରଚଇ
୧୩. ଖ. ବେଗ
୧୪. ଖ. ପଥକୁ

ଅର୍ଥ -

ଭୋ ସଖି ମୋର ବୋଲ କର । ସ୍ୱେ ମଣି ମୁଖର ମଞ୍ଜୀର ।୨୨।
ଚରଣୁଂ କାଢ଼ି[୧] ଥୁଅ ସହେ । କେଳି କାଳକୁ ରିପୁ ପ୍ରାସ୍ୱେ ।୨୩।
କୁଞ୍ଜ ଗୃହକୁ ସଖୀ ଯିବା । ଚାଲ ଗୋ କୃଷ୍ଣଙ୍କୁ ଦେଖିବା ।୨୪।
ସେ କୁଞ୍ଜ ଅଟଇ କେମନ୍ତ । ଅନ୍ଧାର ହୋଇଛି[୨] ବହୁତ ।୨୫।
ନୀଳ ବସନ ଅଙ୍ଗେ ତୋର । ପିନ୍ଧିଣ[୩] ଆସ ଯିବା ଖର ।୨୬।

ଗୀତ -

*ଉରସି ମୁରାରେରୁପହିତହାରେ ଘନ ଇବ ତରଳବଳାକେ ।*
*ତଡ଼ିଦିବ ପୀତେ ରତିବିପରୀତେ ରାଜସି ସୁକୃତବିପାକେ ।।୫।।*

ଅର୍ଥ -

ଭୋ ସଖି ରାଧିକେ ମୋହର । ଛାମୁରେ କହଇଂ[୪] ତୋହର ।୨୭।
ରତିର ବିପରୀତ ହୋନ୍ତେ । ତୋ କଣ୍ଠେ[୫] ହାର ଥିବ ଯେତେ ।୨୮।
ସେ କୃଷ୍ଣ ହୃଦରେ ପଡ଼ନ୍ତେ । ଏମନ୍ତ ଦିଶିବ ଯୁଗତେ ।୨୯।
ଘନ ମେଘର[୬] ସନ୍ନିଧାନେ । ଉଡ଼ନ୍ତେ ବକ ପକ୍ଷୀ[୭] ଯେହ୍ନେ ।୩୦।
ସେମନ୍ତ ଦିଶିବ ସୁନ୍ଦର । କୃଷ୍ଣ ହୃଦରେ ତୋର ହାର ।୩୧।
ମେଘ ପରାୟେ[୮] ବନମାଳୀ । ତୋ ଅଙ୍ଗ ଚହଟିବ[୯] ବିଜୁଳି ।୩୨।

ଗୀତ -

*ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନମ୍ ।*
*କିଶଳୟଶୟନେ ପଙ୍କଜନୟନେ ନିଧିମିବ ହର୍ଷନିଧାନମ୍ ।।୬।।*

---

୧. ଖ. କାନ୍ତି
୨. କ. ହୋଇଁଛି
୩. କ. ବନ୍ଧୀଣ
୪. କ. କହଇଂ
୫. କ. ତୁ କଣ୍ଠେ
୬. ଖ. ଘନ ଯେ ମେଘ
୭. ଖ. ପନ୍ତି
୮. ଖ. ମେହ ପରାଏ
୯. କ. ଚହିଟିବ

ଅର୍ଥ -

ଶ୍ରୀକୃଷ୍ଣ ଜଙ୍ଘନରେ[୧] ନେଇ । ଜଙ୍ଘନ[୨] ଘଟା ତୋର ସହି ।୩୩।
ଜଙ୍ଘନ[୩] କେମନ୍ତ ମିତଣୀ । ତୋହର ହୋଇଥିବ[୪] ପୁଣି ।୩୪।
ବସନ ବସ୍ତ୍ରକୁ[୫] ଯେ କହି । ସେଣେ ଉଲଗ୍ନ ଥିବୁ[୬] ହୋଇ[୭] ।୩୫।
ରସନା ଯେ କଟି[୭] ମେଖଳୀ । ସେହା ବାହାର ଥିବୁ କରି ।୩୬।
ଏମନ୍ତ କରି ଯେବେ ବାରେ । ନବ କମଳ ଶଯ୍ୟା[୮] ପରେ ।୩୭।
ପାଇବ ତୋତେ ବନମାଳୀ । ହରଷ[୯] ହୋଇବ ଗୋ ବାଳୀ ।୩୮।
ନିଧି ପାଇଲେ ଯେହ୍ନେ ମତ । ଦରିଦ୍ର ହୁଅଇ ଉଷତ[୧୦] ।୩୯।
ତହୁଁ ଅଧିକ ହେବ ସଖି । ତୋତେ ପାଇଲେ ପଦ୍ମଆଖି ।୪୦।

ଗୀତ -

*ହରିରଭିମାନୀ ରଜନିରିଦାନୀମିୟମପି ଯାତି ବିରାମମ୍ ।*
*କୁରୁ ମମ ବଚନଂ ସତ୍ୱରରଚନଂ ପୂରୟ ମଧୁରିପୁକାମମ୍ ।।୭।।*

ଅର୍ଥ -

ହରି ଅଟଇ ଯେତେ ମାନୀ । ତୁ କି[୧୧] ନ ଜାଣୁ ତା[୧୨] ସଜନୀ ।୪୧।
ରଜନୀ ଉଜାଗର ହୋଇ । ତୋର ଯିବାକୁ ଅଛି[୧୩] ଚାହିଁ ।୪୨।
ସେ ମଧୁ ଯାମିନୀ ଗୋ ସଖି । ଶେଷ ହୋଉଛି[୧୪] ଚନ୍ଦ୍ରମୁଖି ।୪୩।
ମୋର ବଚନ ବାରେ କର । ସଜ ତୁ ହୁଅ[୧୫] ତତପର ।୪୪।
ମଧୁରିପୁ ଯେ ବନମାଳୀ । ତା[୧୬] ବାଞ୍ଛା ପୂରାଅ ଗୋ ବାଳି ।୪୫।

---

୧. ଖ. ଜଘନରେ
୨. ଖ. ଜଘନ
୩. ଖ. ଜଘନ
୪. ଢ. ହୋଇ
୫. ଖ. ବସ୍ତ୍ରକୁ
୬. ଖ. ଥିବୁ ରହି
୭. ଖ. କଟି ଯେ
୮. ଢ. ସେଯ୍ୟା
୯. ଢ.ଖ. ହରସ
୧୦. ଢ.ଖ. ଉସତ
୧୧. ଖ. ତୁହି
୧୨. ଖ. ଗୋ
୧୩. ଖ. ବାଟ
୧୪. ଖ. ହୋଇଛି
୧୫. ଖ. ହୋଅ
୧୬. ଖ. ତୁ

ଭଣିତା -

*ଶ୍ରୀ ଜୟଦେବେ କୃତହରିସେବେ ଭଣତି ପରମରମଣୀୟମ୍ ।*
*ପ୍ରମୁଦିତହୃଦୟଂ ହରିମତିସଦୟଂ ନମତ ସୁକୃତକମନୀୟମ୍ ॥୮॥*

ବିକିରତି ମୁହୁଃ ଶ୍ୱାସାନ୍ନାଶାଃ ପୁରୋ ମୁହୁରୀକ୍ଷ୍ୟତେ
ପ୍ରବିଶତି ମୁହୁଃ କୁଞ୍ଜଂ ଗୁଞ୍ଜନ୍ମୁହୁର୍ବହୁ ତାମ୍ୟତି ।
ରଚୟତି ମୁହୁଃ ଶଯ୍ୟାଂ ପର୍ଯ୍ୟାକୁଳଂ ମୁହୁରୀକ୍ଷ୍ୟତେ
ମଦନକଦନକ୍ଲାନ୍ତଃ ! କାନ୍ତେ ପ୍ରିୟସ୍ତବ ବର୍ତ୍ତତେ ॥ ଶ୍ଳୋକ-୩୧ ॥

ଅର୍ଥ -

| | | | |
|---|---|---|---|
| ହେ କାନ୍ତେ ରାଧିକେ ତୋ କାନ୍ତ | । | ମଦନ ବାଣେ ହୋଇଂ[୧] କ୍ଳାନ୍ତ | ।୪୬। |
| ବ୍ରତିଛି ଏମନ୍ତ ପ୍ରକାରେ | । | କହଇଂ[୨] ଶୁଣ ତୋ ଆଗରେ | ।୪୭। |
| ପୁଣି ପୁଣି ବହନ[୩] କରି | । | ନିଃଶ୍ୱାସ ଛାଡ଼ଇ ମୁରାରି | ।୪୮। |
| ପୁଣି ପୁଣି[୪] ତୋହୋର ଯିବା | । | ପଥକୁ ଚାହିଁ ହୋଏ ଉଭା | ।୪୯। |
| ପୁଣି ପୁଣି କୁଞ୍ଜ ସଦନେ | । | ପ୍ରବେଶ ହୁଅଇ ବହନେ | ।୫୦। |
| ପୁଣି ପୁଣି ତୋତେ ନ ଦେଖି | । | ବିକଳ ହୋଏ ହରି ସଖି | ।୫୧। |
| ପୁଣି ଶଯ୍ୟାରେ[୫] ପ୍ରବେଶଇ | । | ପୁଣି ଉଠଇ[୬] ବେଗ୍ର ହୋଇ | ।୫୨। |
| ପୁଣି ହିଁ ପର୍ଯ୍ୟାକୁଳ ହୋଇଂ | । | ତୋ ପ୍ରାଣନାଥ ଗୋ ବଞ୍ଚଇ | ।୫୩। |
| ବହୁତ କ୍ଳେଶଯୁକ୍ତ ତାର | । | ନ ପୁଣ[୭] ହୋଅଇ ଅସାର | ।୫୪। |

ତ୍ୱଦ୍‌ବାମେନ ସମଂ ସମଗ୍ରମଧୁନା ତିଗ୍ମାଂଶୁରସ୍ତଂଗତୋ
ଗୋବିନ୍ଦସ୍ୟ ମନୋରଥେନ ଚ ସମଂ ପ୍ରାପ୍ତଂ ତମଃ ସାନ୍ଦ୍ରତାମ୍ ।
କୋକାନାଂ କରୁଣସ୍ୱନେନ ସଦୃଶୀ ଦୀର୍ଘା ମଦଭ୍ୟର୍ଥନା
ତନ୍ମୁଗ୍ଧେ ବିଫଳଂ ବିଳମ୍ବନମସୌ ରମ୍ୟୋଽଭିସାରକ୍ଷଣଃ ॥ ଶ୍ଳୋକ-୩୨ ॥

୧. ଖ. ହୋଇ
୨. ଖ. କହଇ
୩. ଖ. ବଚନ
୪. ଖ. ଗୁଣି ଗୁଣି
୫. ଚ. ସେଯ୍ୟାରେ
୬. ଖ. ତରରେ
୭. ଖ. ପୁଣି ସେ

ଅର୍ଥ -

କୃଷ୍ଣର ଦେଖିଣ ଏମନ୍ତ । ଅସ୍ତ ହୋଇଲେ ଛାୟାକାନ୍ତ ।୫୫।
ଗୋବିନ୍ଦ ମନୋରଥେ[1] କରି । ପ୍ରାପତ ହୋଇଲା ତିମିରି ।୫୬।
କୋକମାନଙ୍କର କରୁଣ[2] । ସ୍ୱନର[3] ତୁଲେ ପ୍ରିୟେ ଜାଣ ।୫୭।
ମୋହୋର ପଦାର୍ଥନା ସଖି । ପାକ ହୋଇଲା ଚନ୍ଦ୍ରମୁଖି ।୫୮।
ହେ ମୁଗ୍ଧେ ଯେଣୁ କରି ନିନା । ବିଳମ୍ବ ବିଫଳ ଗୋ ସିନା ।୫୯।
ଅଭିସାରକୁ[4] ଯେହିକ୍ଷଣ । ରମ୍ୟ ହୋଇଛି ସଖି ଶୁଣ ।୬୦।

**ଆଶ୍ଳେଷାଦନୁ ଚୁମ୍ବନାଦନୁ ନଖୋଲ୍ଲେଖାଦନୁ ସ୍ୱାନ୍ତଜ-**
**ପ୍ରୋଦ୍‌ବୋଧାଦନୁ ସଂଭ୍ରମାଦନୁ ରତାରମ୍ଭାଦନୁ ପ୍ରୀତୟୋଃ ।**
**ଅନ୍ୟାର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ ସମ୍ଭାଷଣୈର୍ଜାନତୋ -**
**ର୍ଦମ୍ପତ୍ୟୋରିହ କୋ ନ କୋ ନ ତମସି ବ୍ରୀଡ଼ାବିମିଶ୍ରୋ ରସଃ ॥ ଶ୍ଳୋକ-୩୩ ॥**

ଅର୍ଥ -

ଭୋ ରାଧେ ! ତମ ଯେ ଅପାର । ସ୍ତିରୀ ପୁରୁଷ ଦୁହିଙ୍କର ।୬୧।
ବ୍ରୀଡ଼ା[5] ଯେ ଲଜ୍ଜା ଯେଣୁ କରି । ମିଶ୍ରିତ[6] ଦେଖି ସେ ତିମିରି ।୬୨।
ହୋଇଲେ[7] କେଉଁ କେଉଁ ରସ । ତହିଁର କହଇ ସନ୍ଦେଶ ।୬୩।
ଯେକ ପୁରୁଷ ଅନ୍ୟ ନାରୀ । ସଙ୍ଗେ ସଙ୍କେତ ଥିଲା କରି ।୬୪।
ସେ ସ୍ଥାନେ ସେ ପୁରୁଷ ନାରୀ । ସଙ୍କେତ ଅନ୍ୟ ସଙ୍ଗେ କରି ।୬୫।
ପ୍ରବେଶ ହୋନ୍ତେ ବେନି ଜନ । ନ ଜାଣେ ପର କି ଆପଣ ।୬୬।
ଯେକୁ ଆରକେ ଆଲିଙ୍ଗନ । ଦେଲେ ସେ ବଦନେ ଚୁମ୍ବନ ।୬୭।
ନକ୍ଷତ୍ର[8] ଦେଲେ ସ୍ତନଭାର । ଭଙ୍ଗିମ[9] ହୋଏ ରୋମ ଆର ।୬୮।

---

୧. ଖ. ମନେ ଖେଦ
୨. ଖ. କାରଣ
୩. କ. ସ୍ୱାନର
ଖ. ସ୍ୱାନର
୪. କ. ଅାବିସାରକୁ
୫. ଖ. ବ୍ରିଷ (?)
୬. ଖ. ମାଶ୍ରୀତ (?)
୭. ଖ. ହୋଇଲ
୮. ଖ. ନଖତ
୯. ଖ. ଭଙ୍ଗମ

ଦୋରତି ଆରମ୍ଭିଲେ ପୁଣି । ନାନା ପ୍ରକାରେ ବେନିପ୍ରାଣୀ ।୬୯।
ସେମାନ ହୋଇଲାଉଂ କରି[1] । ବିଚାର କଲେ ପୁସ[2] ନାରୀ ।୭୦।
ଦୁହେଁ ଦୁହିଙ୍କ[3] କଥାମାନ । ଜାଣିଲେ ଯେ ପୂର୍ବ ବିଧାନ ।୭୧।
ସୁରତି ଅନ୍ତେ କଥା ହୋନ୍ତେ[4] । ଲଜ୍ଜା ପାଇଲେ ଦୁହେଁ ଚିତ୍ତେ ।୭୨।
ତେଣୁ[5] ସେ ଅନ୍ଧକାରେ ସଖି । ଚାଲ ତୁ ଶ୍ରୀକୃଷ୍ଣ ଦେଖି ।୭୩।

ସଭୟଚକିତଂ ବିନ୍ୟସ୍ୟନ୍ତୀଂ ଦୃଶୌ ତିମିରେ ପଥି
ପ୍ରତିତରୁ ମୁହୁଃ ସ୍ଥିତ୍ୱା ମନ୍ଦଂ ପଦାନି ବିତନ୍ୱତୀମ୍ ।
କଥମପି ରହଃ ପ୍ରାପ୍ତାମଙ୍ଗୈରନଙ୍ଗତରଙ୍ଗିଭିଃ
ସୁମୁଖି ସୁଭଗଃ ପଶ୍ୟନ୍ ସ ତ୍ୱାମୁପୈତି କୃତାର୍ଥତାମ୍ ॥ ଶ୍ଳୋକ-୩୪ ॥

ଅର୍ଥ -

ତିମିର ଯେଟି ଅନ୍ଧକାର । ବାଟରେ ଚାଲୁଥିବୁ ଧୀର ।୭୪।
ସଭୟେ[6] ଚକିତ ଲୋଚନେ । ଚାହୁଁ ତୁ ଥିବୁ ଦିଗମାନେ ।୭୫।
ମାର୍ଗରେ ଆସିବାରେ ସହି । ପ୍ରତି ବୃକ୍ଷ ମୂଳରେ ରହି ।୭୬।
ଅଳ୍ପ ଅଳ୍ପ କରି ତୋର[7] । ବଢ଼ାଉ ଥିବୁ ଗୋ' ପୟର ।୭୭।
ସେକାନ୍ତେ ଅନଙ୍ଗ ସମ୍ବନ୍ଧି[8] । ଚେଷ୍ଟା ଅଙ୍ଗରେ ଥିବ ବ୍ୟାଧି ।୭୮।
ହେ ସଖି ! ରାଧିକେ ତୁ ଶୁଣ । ଶୁଭଗ ଯେଟି ନାରାୟଣ ।୭୯।
ସେମନ୍ତ ବେଳେ ତୋତେ ଦେଖି । କୃତାର୍ଥ ହୋଇବ ମୋ ସଖୀ ।୮୦।
ଦୂତୀ ବଚନ ଶୁଣି ରାଧା । କୃଷ୍ଣଙ୍କୁ ବଳିଲା ଶରଧା[10] ।୮୧।
ଉଠିଲା ସଖୀ କର ଧରି । ଗମନ କରଇ ସୁନ୍ଦରୀ ।୮୨।
କେତେହେଁ ଦୂର ଆସି ପୁଣି । ଅସ୍ତରେ ପଡ଼ିଲା ଧରଣୀ ।୮୩।

---

୧. ଖ. ହୋଇଲୁ ଉ କରି
୨. ଖ. ପୁଂସ
୩. ଖ. ହରିଙ୍କି
୪. ଖ. ସ କଥା ହୋପନ୍ତେ
୫. ଖ. ଏଣୁ
୬. ଖ. ସଭୟ
୭. ଢ଼. ତାର
୮. ଖ. ଚି
୯. ଖ. ସମାଧି
୧୦. ଢ. ସରଧା

ସଖୀ ମୁଖକୁ ଚାହିଁ କହେ । ମୁଁ ଯେହିଠାରେ ଥାଇଁ ସହେ ।୮୪।
ତୁ ଯାଇଁ ଶ୍ରୀକୃଷ୍ଣଙ୍କୁ ଆଣ । ରଖ ଗୋ ଯେ ମୋହର ପ୍ରାଣ ।୮୫।
ଶୁଣ[1] ସୁଜନେ ଦେଇ ଚିତ୍ତେ । ଏ ଗୀତ ଅଟଇ କେମନ୍ତ ।୮୬।
ଯେ ପୂର୍ବେ ଭାଗ୍ୟ କରିଥାଇ । ସେ ସେ ଯେ ଗ୍ରନ୍ଥ ସୁମରଇ ।୮୭।
ହୃଦୟ ହୁଅଇ ପ୍ରମୋଦ । ତୁଟାଇ[2] ଦିନୁ ଦିନୁ ଧନ୍ଦ ।୮୮।
ଦୟା କରନ୍ତି ଯେ ମୁକୁନ୍ଦ । ତାହାଙ୍କ ଚରଣାରବିନ୍ଦ ।୮୯।
ସୁକୃତ କାମନାକୁ କହି । ପୂର୍ଣ୍ଣ କରିବେ ଭାବଗ୍ରାହୀ ।୯୦।
ତ୍ରୟଦଶମ[3] ଗାଥା ଶେଷ । ଧ୍ରୁବ ବଚନ ଏ ପ୍ରକାଶ ।୯୧।
ହରି ଚରଣେ ନିରନ୍ତରେ । ବଜରି ଶରଣ ଫୁକାରେ ।୯୨।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ*
*ମୃତ୍ବଜରିଦାସେନ କୃତୌ ସାକାଂକ୍ଷପୁଣ୍ଡରୀକାକ୍ଷୋ ନାମ*
*ପଞ୍ଚମ ସର୍ଗଃ ।*

---

୧. କ. ଶୁଣି
୨. ଖ. ଅଟଇ
୩. କ. ଯେକାଦସମ
ଖ. ଏକାଦଶମ

# ଚତୁର୍ଦ୍ଦଶ ଅଧ୍ୟାୟ

**ଅଥ ତାଂ ଗନ୍ତୁମଶକ୍ତାଂ ଚିରମନୁରକ୍ତାଂ ଲତାଗୃହେ ଦୃଷ୍ଟ୍ୱା ।**
**ତଚ୍ଚରିତଂ ଗୋବିନ୍ଦେ ମନସିଜମନ୍ଦେ ସଖୀ ପ୍ରାହ ॥ ଶ୍ଳୋକ-୩୫ ॥**

ଅର୍ଥ -

ଏଥି ଉତ୍ତାରେ ଅନ୍ୟ କଥା । ସୁଜନେ ଶୁଣିମା ବେବସ୍ଥା ।୧।
ଗୁଣ୍ଡ ମଲାର ରାଗେ ଗୀତେ । ଦ୍ୱାଦଶ ଗାଥାର ଯେ ଅର୍ଥେ ।୨।
ରାଧିକା ଚରିତ୍ର[୧] ତା ସଖୀ । ଘେନିଣ ଶ୍ରୀକୃଷ୍ଣ ଟହିକି ।୩।
ଚଳିଲା ଉଦ୍‌ବେଗ ହୋଇ । ଭେଟିଲା କୁଞ୍ଜବନେ ଯାଇଁ ।୪।
ଶିର ଉପରେ ଦେଇ କର । ବୋଲଇ ଶୁଣ ଚକ୍ରଧର ।୫।
ରାଧିକା ତୋତେ ଦେଖିବାରେ । ପାଇଁ କାଳହୁଁ[୨] ଧ୍ୟାନ କରେ ।୬।
ଆରତି[୩] ହୋଇ ଆସୁଥିଲା । ଅସ୍କତ[୪] ହୋଇ ନ ପାରିଲା ।୭।
କୁଞ୍ଜ ଗୃହରେ ଅଛି ବସି । ଦେଖି ଅଇଲି ସେ ସୁକେଶୀ[୫] ।୮।
ମଦନରାଣ[୬] ବାଣ ଘାତେ । ଚିନ୍ତା[୭] କରଇ ବାଳୀ ହାତେ ।୯।
ରହ ଯେ ସ୍ୱେକାନ୍ତକୁଁ[୮] କହି । ସ୍ୱେମନ୍ତ ସ୍ଥାନେ ବସି ରାହି[୯] ।୧୦।

(ମହ୍ଲାରରାଗେଣ ଗୀୟତେ)

ଗୀତ -

*ପଶ୍ୟତି ଦିଶି ଦିଶି ରହସି ଭବନ୍ତମ୍ ।*
*ତ୍ୱଦଧରମଧୁରମଧୂନି ପିବନ୍ତମ୍ ।*
*ନାଥ ହରେ ସୀଦତି ରାଧା ବାସଗୃହେ ॥ ଧ୍ରୁବମ୍ -୧ ॥*

---

୧. ଖ. ଚରିତ
୨. ଖ. କାଳକୁ
୩. ଖ. ଆରକ୍ତ
୪. ଖ. ଆସକ୍ତ
୫. ଖ. ଦେଖି ମୁଁ ଅଇଲି ସୁକେଶୀ
୬. ଖ. ରାଜ
୭. ଖ. ଚିର
୮. ଖ. ଏକାନ୍ତକୁ
୯. ଖ. ହରେ

ଅର୍ଥ -

ହେ ହରି[୧] ତୁ ତାହାର ନାଥ । ତୋ ବିନୁ ବିଷାଦ ତା ଚିତ୍ତ ।୧୧।
ଚାରି ଦିଗକୁ ଚାହିଁ ବାଳି । ପିଛୁଡ଼ା[୨] ନ ପାରଇ ତାଳି ।୧୨।
ଏ ତୋର ଅଧର ଅମୃତ । ପାନ କରନ୍ତେ ଅନୁବ୍ରତ ।୧୩।
ଜୀବନ ରହିଅଛି ତାର । ଏ ବିନୁ ନାହିଁ ଅନ୍ୟ ଆର[୩] ।୧୪।

ଗୀତ-

*ତ୍ୱଦଭିସରଣରଭସେନ ବଳନ୍ତୀ ।*
*ପତତି ପଦାନି କିୟନ୍ତି ଚଳନ୍ତୀ ॥୨॥*

ଅର୍ଥ -

ଭୋ ହରେ ରାଧିକା ସୁନ୍ଦରୀ[୪] । ତୋ ଅଭିସରଣ[୫] ସୁମରି[୬] ।୧୫।
ପହଣ୍ଡ ଚାରି[୭] ସେ ଆସନ୍ତେ । ଢଳି ପଡ଼ଇ ବାଳୀ ପଥେ ।୧୬।

ଗୀତ -

*ବିହିତ ବିଶଦବିସକିଶଳୟବଳୟା ।*
*ଜୀବତି ପରମିହ ତବ ରତିକଳୟା ॥୩॥*

ଅର୍ଥ -

ନବ କମଳ କିଶଳୟ । ହସ୍ତରେ କରିଛି ବଳୟ ।୧୭।
କେବଳ ମାତ୍ର ଜୀଇଁଅଛି । ତୋ ରତିକଳା ଗୋ ମୃଗାଛି[୮] ।୧୮।

ଗୀତ -

*ମୁହୁରବଲୋକିତମଣ୍ଡନଲୀଳା ।*
*ମଧୁରିପୁରହମିତିଭାବନଶୀଳା ॥୪॥*

---

୧. ଖ. ପୋଥିରେ ଅଷ୍ଟମ ପଦ ପରେ "ହେ ହରି ... ବିଷାଦ ତା ଚିତ୍ତ" ଅଛି
୨. କ. ପିଛଡ଼ା
୩. କ. ଏ ବିନୁ ଅନ୍ୟ ନାହିଁ ତାର
୪. ଖ. ସୁନ୍ଦର
୫. ଖ. ଅଭିଶରଣ
୬. ଖ. ସୁନ୍ଦର
୭. କ. ଚାଲି
୮. ସେ ମୃଗାକ୍ଷି

ଅର୍ଥ -

ଏ ତୋର ମଣ୍ଡନ ଯେ ବେଶ । ଧରି ସେ ହୋଅଇ ହରଷ ।୧୯।
ବୋଲଇ ମଧୁରିପୁ ମୁହିଁ । ପୁଣି ପୁଣି ବେଶକୁ ଚାହିଁ ।୨୦।
ଆପଣା ରୂପକୁ ଅନାଇଁ । ଏମନ୍ତ ବୋଲି ଭାବୁଥାଇ ।୨୧।

ଗୀତ -

*ଦ୍ରୁତମୁପୈତି ନ କଥମଭିସାରମ୍ ।*
*ହରିରିତି ବଦତି ସଖୀମନୁବାରମ୍ ॥୫॥*

ଅର୍ଥ -

ପୁଣି ବୋଲଇ ସେ ସୁନ୍ଦରୀ । ଦ୍ରୁରିତ[୧] ହୋଇ କିମ୍ପା ହରି ।୨୨।
ସ୍ୱେ ଅଭିସରକୁ ନଇଲା[୨] । ସ୍ୱେତ୍ୱେ ବିଳମ୍ବ ସଖୀ କଲା ।୨୩।
ଏମନ୍ତ ବୋଲି ପୁଣ ପୁଣି । ବଦଇ ମୋ ପ୍ରାଣ ମିତଣୀ ।୨୪।

ଗୀତ -

*ଶ୍ଳିଷ୍ୟତି ଚୁମ୍ବତି ଜଳଧରକଳ୍ପମ୍ ।*
*ହରିରୁପଗତ ଇତି ତିମିରମନଳ୍ପମ୍ ॥୬॥*

ଅର୍ଥ -

ନବ ଜଳଦ ମେଘ ପ୍ରାୟେ । ରଜନୀ ଶୋଭା ଯେଣୁ ପାଏ ।୨୫।
ତୋର ଗମନ ପ୍ରାଏ ମଣି । ଚୁମ୍ବନ କରଇ ତରୁଣୀ ।୨୬।
ଏ ଅନ୍ତେ[୩] ଆଲିଙ୍ଗନ ଦେଇ । ନ ଦେଖି ମୂର୍ଚ୍ଛିତ[୪] ହୁଅଇ ।୨୭।

ଗୀତ -

*ଭବତି ବିଳମ୍ବିନୀ ବିଗଳିତଲଜ୍ଜା ।*
*ବିଳପତି ରୋଦିତି ବାସକସଜ୍ଜା ॥୭॥*

---

୧. କ. ଦ୍ରୁରିତ
୨. ଖ. ଅଭିସରିବାକୁ ନଇଲା
୩. କ. ସେମନ୍ତେ
୪. କ. ମୁର୍ଛିତ

ଅର୍ଥ -

ଗମନ ବିଳମ୍ବ ତୁମ୍ଭର । ଦେଖିଣ ହୋଏ ଲାଜକର[୧] ।୨୮।
ରୋଦନ କରେ ପୁଣ ପୁଣି । ଅସ୍ଥତେ[୨] ପଡ଼ଇ ଧରଣୀ ।୨୯।
ତୋ ବିନୁ ରାଧିକା ସୁନ୍ଦରୀ । ଏମନ୍ତ ହୋଇଅଛି ହରି ।୩୦।

ଭଣିତା -

*ଶ୍ରୀଜୟଦେବକବେରିଦମୁଦିତମ୍ ।*
*ରସିକଜନଂ ତନୁତାମତିମୁଦିତମ୍ ॥୮॥*

ବିପୁଳପୁଲକପାଳିଃ ସ୍ଫୀତସୀତ୍କାରମନ୍ତ-
ର୍ଜନିତଜଡ଼ିମକାକୁବ୍ୟାକୁଳଂ ବ୍ୟାହରନ୍ତୀ ।
ତବ କିତବ ବିଧାୟାମନ୍ଦକନ୍ଦର୍ପଚିନ୍ତାଂ
ରସଜଳଧିନିମଗ୍ନା ଧ୍ୟାନଲଗ୍ନା ମୃଗାକ୍ଷୀ ॥ ଶ୍ଳୋକ-୩୬ ॥

ଅର୍ଥ -

ବିସ୍ତାର ରୋମାବଳି ତାର । ଉଙ୍ଗିମ[୩] ହେଉଅଛି[୪] ଆର ।୩୧।
ଅନ୍ତର ଜନ୍ମିତ ସୀତ୍କାର । ରୋମ ଟାଙ୍କୋରେ ତେଣୁ ତାର[୫] ।୩୨।
କାମ ବିକୃତ ବନେ ଥାଇ । ବ୍ୟାକୁଳ କଥାମାନ କହି ।୩୩।
ତୋର ଅଭାବେ ତାକୁ ହରି । ମଦନ ଚିନ୍ତା ତନୁ ଘାରି ।୩୪।
ତୋ ରସ ଅମୃତ ପରାୟେ[୬] । ହୋଇଲା ଶୁଣ ଦେବରାୟେ ।୩୫।
ଯେମନ୍ତ ସମୋଦ୍ର[୭] ଭିତରେ । ରାଧିକା ବୁଡ଼ିଲା ନିର୍ଭରେ ।୩୬।
ମୃଗର ଚକ୍ଷୁ ପ୍ରାୟ ମୋର । ସଖୀର ଲୋଚନ ସୁନ୍ଦର ।୩୭।
ସେ ତୋତେ ପାଇବା ଅର୍ଥରେ । କରିଛି ଧ୍ୟାନ ନିରନ୍ତରେ ।୩୮।

---

୧. ଖ. ନାଜକର
୨. ଖ. ଆସନ୍ତେ
୩. ଖ. ଉଙ୍ଗମ
୪. ଚ. ହୋଉଅଛି
୫. ଖ. ଖଙ୍କୋରେ ତନୁ ତାର (୧)
୬. କ. ତୋର ସମ ମୋହ ପରାଏ
୭. ଖ. ସମୁଦ୍ର

*ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ପତ୍ରେଽପି ସଂଚାରିଣି*
*ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।*
*ଇତ୍ୟାକଳ୍ପବିକଳ୍ପତଳ୍ପରଚନାସଂକଳ୍ପଲୀଳାଶତ-*
*ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି ॥ ଶ୍ଳୋକ-୩୭ ॥*

ଅର୍ଥ -

| | | | | |
|---|---|---|---|---|
| ଆର କଥାଏ ପ୍ରଭୁ ଶୁଣ | । | ରାଧିକା ଆପଣାଂ[୧] ଅଙ୍ଗେଣ | ।୩୯। |
| ଯେ ଆମ୍ଭ ରସ[୨] ପାଇଁ କରି | । | ଭୂଷଣ ହୋଥଇ ସୁନ୍ଦରୀ | ।୪୦। |
| ପତ୍ର ଯେ[୩] ପକ୍ଷୀ ସେ ବନରେ | । | ଚରନ୍ତେ ରାଧିକା ମନରେ | ।୪୧। |
| ତୋର ଗମନ ପ୍ରାଏ ମଣି | । | ପରିଶଙ୍କଇ ସେ କାମିନୀ | ।୪୨। |
| ବିକଳ୍ପ କରିଣ ସୁନ୍ଦରୀ | । | ଶଯ୍ୟା ରଚ୍ଛଇ ବେଗ୍ର କରି[୪] | ।୪୩। |
| ବହୁତ କରି ହୃଦଗତେ | । | ଧ୍ୟାନ କରଇ ବାଳୀ ତୋତେ[୫] | ।୪୪। |
| ଯେମନ୍ତ ଲୀଳାମାନଙ୍କରେ | । | ବ୍ୟାସକ୍ତ[୬] ହୋନ୍ତେ ନିରନ୍ତରେ | ।୪୫। |
| କୃଶ ଉଦରୀ ସଖୀ ମୋର | । | ଦୁଃଖୀ ହୋଇଛି ଦାମୋଦର[୭] | ।୪୬। |
| ଏ ମଧୁ ଯାମିନୀ ପୁହାଇ | । | ନେଇ ନ ପାରିବ ମୋ ସହୀ | ।୪୭। |
| ଭୋ କୃଷ୍ଣ ଦୀନଜନ ବନ୍ଧୁ | । | ନାମ କରୁଣାମୟେ ସିନ୍ଧୁ | ।୪୮। |
| ମୋ ସଖୀ ଯେମନ୍ତେ[୮] ବ୍ରତିବ | । | ସେ କଥା କର ହେ ମାଧବ | ।୪୯। |
| ସୁଜନେ ହୋଇଣ[୯] ସୋରେହା | । | ନିରତେ ପଢୁଥାଅ ଏହା | ।୫୦। |
| ଯେ ଗୀତ ଅଟଇ କେମନ୍ତ | । | ବିରହୀ କ୍ରୀଡ଼ାରେ ଭଣିତ | ।୫୧। |
| ହୃଦସ୍ଥ କରଇ ନିର୍ମଳ | । | ଯେ ବାଞ୍ଛା ଦିଅଇ ସେ ଫଳ | ।୫୨। |
| ହରିଚରଣେ ପୁଣ୍ୟ ନିତ୍ୟେ[୧୦] | । | ବର୍ତ୍ତାନ୍ତି[୧୧] ଅଟଇ ଯୁଗତେ | ।୫୩। |

୧. ଖ. ଆପଣ
୨. ଖ. ଆଭରଣ
୩. ଖ. ପତେ୍ର
୪. ଖ. ସୁର୍ଯ୍ୟ ରଚ୍ଛଇ ବେଗ କରି
୫. ଖ. ତେତେ
୬. କ. ବ୍ୟସକ୍ତ
୭. କ. ଦାମୋଦର
୮. ଖ. କେମନ୍ତେ
୯. କ. ହୋଉଣ
୧୦. ଖ. ନିସ୍ୱେ
୧୧. ଖ. ବରାନ୍ତ

| | | | |
|---|---|---|---|
| ଯେ ପ୍ରେମ ଭକ୍ତିର ବିଚାର | । | ଏ ଗୀତେ ଅଛଇ ଅପାର | ।୫୪। |
| ରାଧିକା ଯେମନ୍ତ ପ୍ରକାରେ | । | କୃଷ୍ଣଙ୍କୁ ଲୋଡ଼ଇ ହୃଦରେ[୧] | ।୫୫। |
| ଏ ରୂପେ ଲୋଡ଼ିବ ଯେ ଅବା | । | କୃଷ୍ଣଙ୍କୁ ଅବଧି ପାଇବା | ।୫୬। |
| ଚତୁର୍ଦ୍ଦଶମ ଗାଥା ଶେଷ[୨] | । | ଧ୍ରୁବ ବଚନ ସ୍ୱେ ପ୍ରକାଶ | ।୫୭। |
| ମୂତ୍ର ବଜରି ଦାସ ଭଣେ | । | ଶ୍ରୀକୃଷ୍ଣ ଶ୍ରୀରାଧା[୩] ଚରଣେ । | ।୫୮। |

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ବାସକସଜ୍ଜା[୪] ବର୍ଣ୍ଣନେ*

*ମୂତ୍ରବଜରିଦାସେନ କୃତୌ ଧନ୍ୟବୈକୁଣ୍ଠୋ ନାମ*

*ଷଷ୍ଠଃ ସର୍ଗଃ[୫] ।*

---

୧. ଖ. ସଧିରେ
୨. କ. ଦ୍ୱାଦଶ ଗାଥା ହୋଏ ଶେଷ
୩. ରାଧିକା
୪. କ. drops ବାସକସଜ୍ଜା
୫. କ. ଷଷ୍ଠମ

# ପଞ୍ଚଦଶ ଅଧ୍ୟାୟ

ଅତ୍ରାନ୍ତରେ ଚ କୁଳଟାକୁଳବର୍ତ୍ମପାତ-
ସଂଜାତପାତକ ଇବ ସ୍ଫୁଟଲାଞ୍ଛନଶ୍ରୀଃ ।
ବୃନ୍ଦାବନାନ୍ତରମଦୀପୟଦଂଶୁଜାଲୈ-
ର୍ଦ୍ଦିକ୍ସୁନ୍ଦରୀବଦନଚନ୍ଦନବିନ୍ଦୁରିନ୍ଦୁଃ ॥ ଶ୍ଳୋକ-୩୮ ॥

ଅର୍ଥ -

| | | | |
|---|---|---|---|
| ଏଥି ଉତ୍ତାରେ ଦିବ୍ୟରସ | । | ଯେ ଅର୍ଥଗୋବିନ୍ଦ ପ୍ରକାଶ | ।୧। |
| ଗୀତଗୋବିନ୍ଦ ଅର୍ଥମାନେ | । | ସୁଜନେ ଶୁଣ ଏକମନେ | ।୨। |
| ଇନ୍ଦୁ ଯେ ଚନ୍ଦ୍ରମାକୁ କହି | । | ସେ ବୃନ୍ଦା ବନସ୍ତରେ[1] ଉଇଂ | ।୩। |
| କିରଣେ କରି ଦୀପ୍ତ[2] କଲା | । | ଚୌଦିଗ ଉଜ୍ଜଳ[3] ହୋଇଲା | ।୪। |
| ସେ କେହ୍ନେ[4] ପାଉଅଛି ଶୋଭା | । | କଥାଏ ପଟାନ୍ତର ଦେବା | ।୫। |
| ଦିଗସୁନ୍ଦରୀମାନଙ୍କର | । | ମୁଖକୁ ଦିଶଇ ସୁନ୍ଦର | ।୬। |
| ଚନ୍ଦନ ବିନ୍ଦୁ ପ୍ରାଏ ଦିଶେ | । | ମୁଖ ଚନ୍ଦ୍ରମା ପରେ କି ସେ | ।୭। |
| ସେ ଚନ୍ଦ୍ର କଳଙ୍କକୁ ଚାହିଁ | । | ବିଚାରେ ଏମନ୍ତ ଦିଶଇ | ।୮। |
| କୁଳଟା ଅତି ସ୍ତିରୀମାନେ[5] | । | ତାହାଙ୍କ ବାଟ ବିରୋଧନେ | ।୯। |
| ଜାତ ହୋଇଲା କୋପ ଯେଣୁ | । | ଶାପ୍ୟ[6] ସେ ଦେଲେ ଚଳି ତେଣୁ | ।୧୦। |
| ସେଣୁ ସେ ନୋହଇ କଳଙ୍କ | । | ସ୍ଫୁଟ ହୋଇଛି ପାପ ଦେଖ | ।୧୧। |
| ଗତ ଅର୍ଜିଲା ଫଳ ଭୁଞ୍ଜି | । | ଲାଞ୍ଛନ କେ ପାରିବ ଭାଜି[7] | ।୧୨। |

---

୧. ଖ. ବନାନ୍ତରେ
୨. ଖ. ଦ୍ରିବ
୩. ଖ. ଉଜ୍ଜ୍ୱଳ
୪. ଖ. କେସ୍ନେ
୫. ଖ. କୁଳଟା ସ୍ତିରୀ ସ୍ତିରୀମାନେ
୬. ଖ. ଶାପ
୭. କ. ଲକ୍ଷନ କେ ପାରିବ ଭାଗି

ପ୍ରସରତି ଶଶଧରବିମ୍ବେ ବିହିତବିଳମ୍ବେ ମାଧବେ ବିଧୁରା ।
ବିରଚିତବିବିଧବିଳାପଂ ସା ପରିତାପଂ ଚକାରୋଚ୍ଚୈଃ ॥ ଶ୍ଳୋକ-୩୯ ॥

ଅର୍ଥ -

| | | | | |
|---|---|---|---|---|
| ଅନ୍ଧାର ହୋଇଲାକ ଶେଷ | । | ଯହୁଁ ଚନ୍ଦ୍ରମା ପରକାଶ | ।୧୩। |
| ମାଧବ ଆସିବା ବିଳମ୍ବ | । | ଜାଣି ରାଧିକା ତାପଭାବ | ।୧୪। |
| ବିବିଧ ପ୍ରକାରେ ରୋଦନ | । | କରଇ ବସି ଘନ ଘନ | ।୧୫। |
| ନାନା ସୁଖାଦିମାନ ଯେତେ | । | ରୁଚଇ ନାହିଁ ତୋର ଚିତ୍ତେ | ।୧୬। |

(ମାଳବଗୌଡ଼ାରାଗେଣ ଗୀୟତେ)

ଗୀତ -

*କଥିତସମୟେଽପି ହରିରହହ ନ ଯଯୌ ବନମ୍ ।*
*ମମ ବିଫଳମିଦମମଳମପି ରୂପଯୌବନମ୍ ।*
*ଯାମି ହେ କମିହ ଶରଣଂ ସଖୀଜନବଚନବଞ୍ଚିତା ॥ ଧ୍ରୁବମ୍ - ୧ ॥*

ଅର୍ଥ -

| | | | |
|---|---|---|---|
| ମାଳବ ଗଉଡ଼ା ରାଗେଣ | । | ଗାଥାର ଅର୍ଥ ଯେବେ ଶୁଣ | ।୧୭। |
| ରାଧିକା ଯେମନ୍ତ ବୋଲୁଛି | । | ବିଷାଦ ହୋଇଂଣ ମୃଗାକ୍ଷୀ | ।୧୮। |
| ଏ ବନେ କାହାରେ ଶରଣ | । | ପଶିବି କେ ଅଛି କାରଣ | ।୧୯। |
| ସଖୀ ବଚନେ କରି ମୋର | । | ଭଣ୍ଡିତ ହୋଇଲି ଅପାର | ।୨୦। |
| କୃଷ୍ଣ ନଇଲା ମୋର ପାଶ | । | କି ଦୋଷେ ହୋଇଲାନି ରାସ[୧] | ।୨୧। |
| ସଖୀ ମୋ ସମସ୍ତ କୃଷ୍ଣଙ୍କୁ | । | କହନ୍ତେ ନଇଲା ଏଥକୁ | ।୨୨। |
| ଅମଳ ରୂପ ଯେ ଯୌବନ | । | ବିଫଳ ହୋଇଲା ମୋ ଜାଣ | ।୨୩। |

ଗୀତ -

*ଯଦନୁଗମନାୟ ନିଶି ଗହନମପି ଶୀଳିତମ୍ ।*
*ତେନ ମମ ହୃଦୟମିଦମସମଶରକୀଳିତମ୍ ॥୨॥*

---

୧. ଖ. ହୋଇଲା ନିରାଶ

ଅର୍ଥ -

ଯାହାକୁଁ[1] ଅନୁଗମ[2] ଅର୍ଥେ । ନିଶାରେ ଗହନ ବନସ୍ତେ ।୨୪।
ଘର ପ୍ରକାରେ ଯେଣୁ କଲି । ନିରତେ ମନରେ ଧଇଲି ।୨୫।
ତେଣୁ ଏ ହୃଦୟ ମୋହର । ଅସମଶରେ ବାଧା କର ।୨୬।
କିଲି ହୋଇଛି ନିରନ୍ତରେ । ବେଦନା କହିବି କାହାରେ ।୨୭।

ଗୀତ -

***ମମ ମରଣମେବ ବରମତିବିତଥକେତନା ।***
***କିମିହ ବିଷହାମି ବିରହାନଳମଚେତନା ॥୩॥***

ଅର୍ଥ -

ମମ ମରଣ ନିଶ୍ଚେଂ ଆଜ । ଯେଣୁ ପଡ଼ିଲା ଋତୁରାଜ ।୨୮।
ଯେଣୁ ସଙ୍କେତ ସ୍ଥାନେ ହରି । ନଇଲେ ହୋଉଛି ବିଚାରି ।୨୯।
କିମ୍ବା[3] ମରଣ ବାଞ୍ଛା ମୋର । କହଇ ଶୁଣ ବେଦବ୍ର ।୩୦।
ବିରହାନଳେ ଦେହେ ମୋର । ଦହି ହୋଉଁଛି ନିରନ୍ତର ।୩୧।
ଯେଣୁ ବିରହ ସହି ନୋହେ । ତେଣୁ ମରଣ ଆଶ୍ରେ କଷ୍ଟେ ।୩୨।

ଗୀତ -

***ଅହହ ! କଳୟାମି ବଳୟାଦିମଣିଭୂଷଣମ୍ ।***
***ହରିବିରହଦହନବହନେନ ବହୁଦୂଷଣମ୍ ॥୪॥***

ଅର୍ଥ -

ଅନଙ୍ଗ ଖେଦେ ବଳୟାଦି । ମଣି ଭୂଷଣ ଦେହେଁ ବାଧି[4] ।୩୩।
ହରି ବିରହେ ଦେହ ମୋର । ଦହିଣ ହୋଉଛି[5] ଭିତର ।୩୪।
ଯେଣୁ ଯେ ଭୂଷଣାଦି ଯେତେ । ଦୃଷ୍ଟି[6] ଆଚରିଛନ୍ତି ମୋତେ ।୩୫।

---

୧. ଖ. ତାହାକୁ
୨. ଖ. ଅନୁରମ୍ଯ
୩. ଖ. କିପାଁ
୪. କ. ବ୍ୟାଧି
୫. ଖ. ହୋଉଛି
୬. ଖ. ଦୁଷ୍ଟ

ଗୀତ -

*ମାମହହ ବିଧୁରୟତି ମଧୁରମଧୁଯାମିନୀ ।*
*କାଽପି ହରିମନୁଭବତି କୃତସୁକୃତକାମିନୀ ॥୫॥*

ଅର୍ଥ -

ଅହହ ଖେଦେ କେଉଁ ନାରୀ । ପୁଣ୍ୟ କରିଛି ସେ ଚତୁରୀ ।୩୬।
ଅନୁଭବ କରିଣ ବାଳୀ । ହରିକି ଆଲିଙ୍ଗନ କରି ।୩୭।
ସୁକୃତ କାମନାକୁ କହି । ଏଣୁ ତାହାର ପୁଣ୍ୟ ହୋଇ[1] ।୩୮।
ଅମୃତ ମଧୁର ପରାଏ । ଆଜ ରଜନୀ ପ୍ରତେ ହୋଏ ।୩୯।
ଏ ରାତ୍ର[2] ତେଣୁ କରି ମୋତେ । ଲାଗୁଛି ବିଷପ୍ରାଏ ପ୍ରତେ ।୪୦।

ଗୀତ-

*କୁସୁମସୁକୁମାରତନୁମତନୁଶରଲୀଳୟା ।*
*ସ୍ରଗପି ହୃଦି ହନ୍ତି ମାମତିବିଷମଶୀଳୟା ॥୬॥*

ଅର୍ଥ -

ସ୍ରକ ଯେ ପୁଷ୍ପମାଳା[3] କହି । ହିଂସା କରିଛି ମୋତେ ସେହି ।୪୧।
ତନୁ କେମନ୍ତେ ଅଟେ ମୋର । କୁସୁମଠାରୁ ସୁକୁମାର ।୪୨।
ସେମନ୍ତ କୋମଳ ମୁଁ ଯେଣୁ । ଅସମଶର ମୋତେ ତେଣୁ ।୪୩।
ଲୀଳାମାତ୍ରକେ[4] ମୋର ଅଙ୍ଗ । ବହୁତ କରିଛି ବିଭଙ୍ଗ ।୪୪।

ଗୀତ -

*ଅହମିହ ନିବସାମି ନଗଣିତବନବେତସା ।*
*ସ୍ମରତି ମଧୁସୂଦନୋ ମାମପି ନ ଚେତସା ॥୭॥*

---

୧. ଖ. ଏଣେ ତାହାର ପୂର୍ଣ୍ଣ ହୋଇ
୨. ଖ. ରାତ
୩. ଖ. ପୁଣ ମାଳି
୪. ଖ. ମାତକେ

ଅର୍ଥ -

| | | | |
|---|---|---|---|
| ଏ ଘୋର ଅରଣ୍ୟ ଭିତରେ | । | ବେତ କଣ୍ଟକଂ ସବୁଠାରେ | ।୪୫। |
| ଯେଣେ ମୁଁ ଶୋଚନା ନ କରି | । | ବସିଛି ତା ଗୁଣ ସୁମରି | ।୪୬। |
| ମଧୁସୂଦନ ଥରେ ମୋତେ | । | ସ୍ମରଣ ନ କରଇ ଚିତ୍ତେ | ।୪୭। |

ଭଣିତା -

*ହରିଚରଣଶରଣଜୟଦେବକବିଭାରତୀ ।*
*ବସତୁ ହୃଦି ଯୁବତିରିବ କୋମଳକଳାବତୀ ॥୮॥*

**ତତ୍କିଂ କାମପି କାମିନୀମଭିସୃତଃ କିଂ ବା କଳାକେଳିଭି -**
**ର୍ବଦ୍ଧୋ ବନ୍ଧୁଭିରନ୍ଧକାରିଣି ବନାଭ୍ୟର୍ଣ୍ଣେ କିମୁ ଭ୍ରାମ୍ୟତି ।**
**କାନ୍ତଃ କ୍ଳାନ୍ତମନା ମନାଗପି ପଥି ପ୍ରସ୍ଥାତୁମେବାକ୍ଷମଃ**
**ସଙ୍କେତୀକୃତମଞ୍ଜୁବଞ୍ଜୁଳଲତାକୁଞ୍ଜେଽପି ଯନ୍ନାଗତଃ ॥ ଶ୍ଳୋକ-୪୦ ॥**

ଅର୍ଥ -

| | | | |
|---|---|---|---|
| ସଙ୍କେତ କରି ଅବା ହେଲା | । | ସେ କୃଷ୍ଣ ଏଠାକୁ ନଇଲା | ।୪୮। |
| ସୁନ୍ଦର ଅଶୋକ ବୃକ୍ଷରେ | । | ବେଢ଼ି ଅଛନ୍ତି ଲତା ପରେ | ।୪୯। |
| ଲତାଗୃହକୁ ଯେଣୁ କରି | । | ନଇଲା ହେଉଛି ବିଚାରି | ।୫୦। |
| ଆନ କେହୁଣିଂ କାମେନୀଙ୍କିଂ | । | ଅଭିସାରିଲା ଅବା ଦେଖି | ।୫୧। |
| କେ ଅବା କେଳିକଳାମାନ | । | କରେ ସେ ହୋଇଛି ବନ୍ଧନ | ।୫୨। |
| କି ଅବା ବନ୍ଧୁଂମାନଙ୍କର | । | ସଙ୍ଗତେ ଭ୍ରମୁଛି ବନର | ।୫୩। |
| ଗଲା ଅଇଲା ତାର ନାହିଁ | । | କି ଅବା ବଣା ଅଛି ହୋଇ | ।୫୪। |
| କି ଅବା କ୍ଲାନ୍ତିଂ ଆସୁଥିଲା | । | ଆସ୍ଥତଂ ହୋଇ ନ ପାରିଲା | ।୫୫। |
| ଯହୁଁ ସେ ସଙ୍କେତ ସ୍ଥାନକୁ | । | ନଇଲା ତେଣୁ ମୋ ମନକୁ | ।୫୬। |
| ଯେମନ୍ତ ଲାଗୁଛି ପରତେ | । | ସାଥୀ ତ ନଇଲା ତୁରିତେ | ।୫୭। |

୧. କ. କଣ୍ଟକ
୨. ଖ. କେଉଁଣି
୩. ଖ. କାମିନୀକି
୪. ଖ. ବନ୍ଧୁ
୫. କ. ପ୍ଲାପି
ଖ. ଗ୍ଲାଥି
୬. ଖ. ଆଗନ୍ତ

**ଅଥାଗତାଂ ମାଧବମନ୍ତରେଣ ସଖୀମିହଂ ବୀକ୍ଷ୍ୟ ବିଷାଦମୂକାମ୍ ।**
**ବିଶଙ୍କମାନା ରମିତଂ କସ୍ୟାପି ଜନାର୍ଦ୍ଦନଂ ଦୃଷ୍ଟବଦେତଦାହ ॥ ଶ୍ଳୋକ-୪୧ ॥**

ଅର୍ଥ -

ଯେଥୁ ଉତ୍ତାରୁଂ[1] ସଖୀ ତାର । ଥିଲା ଯେ ଗୋବିନ୍ଦ ଛାମୁର ।୫୮।
ଯେକା ହୋଇଣ ସେ ଆସନ୍ତେ । ରାଧିକା ଦେଖିଲା ତା ପଥେ ।୫୯।
ଯେକା ଆସିବା ଦେଖି ତାର । ବିଚାର କରଇ ହୃଦର ।୬୦।
ବିଷାଦ ହୋଇ ସଖୀ ମୋର । ଆସୁ ତ ଅଛି ଏକାନ୍ତର ।୬୧।
ଆନ କେହୁଣି[2] ସ୍ତିରୀ ସଙ୍ଗେ । କୃଷ୍ଣ ରମିଲା ଅବା ରଙ୍ଗେ ।୬୨।
ଏମନ୍ତ ଦେଖି ସଖୀ ମୋର । ମନରେ ପାଉଛି ବିଧୁର ।୬୩।
ଦେଖିଲା ପ୍ରାଏ କରି ବାଳୀ । କହଇ ବଚନ ବିରୋଳି ।୬୪।
ସୁଜନ ଜନ ହୃଦୟରେ । ଯେ ଗୀତ ଥାଉ ନିରନ୍ତରେ ।୬୫।
ଶ୍ରୀହରି ଚରଣେ ଶରଣ । ବିନୁ ନୋହିବ ମୋର ଆନ ।୬୬।
ଦାସ ବଜରି ମୂଢ଼ମତି । ସୁଜନ ଚରଣେ ପୀରତି ।୬୭।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ଚନ୍ଦବର୍ଣ୍ଣନେ (୩)*
*ମୂଢ଼ବଜରିଦାସେନ କୃତୌ ନାମ*
*ପଞ୍ଚଦଶୋଽଧ୍ୟାୟଃ ।*

---

୧. ଖ. ଉତ୍ତାରେ
୨. ଖ. କେଉଣି
୩. ଢ. ପଞ୍ଚଦଶ ଅଧ୍ୟାୟ

# ଷୋଡ଼ଶ ଅଧ୍ୟାୟ

(ବସନ୍ତରାଗେଣ ଗୀୟତେ)

*ସ୍ମରସମରୋଚିତବିରଚିତବେଶା ।*
*ଗଳିତକୁସୁମଦରବିଲୁଳିତକେଶା ।*
*କାପି ମଧୁରିପୁଣା ବିଳସତି ଯୁବତିରଧିକଗୁଣା ।। ଧ୍ରୁବମ୍-୧ ।।*

ଅର୍ଥ -

| | | | |
|---|---|---|---|
| ସୁଜନେ ଶୁଣ ଏକଚିତ୍ତେ | । | ଯେ ଗୀତଗୋବିନ୍ଦର ଅର୍ଥେ | ।୧। |
| ବସନ୍ତ ରାଗେଣ ଗୀୟତେ | । | ଚଉଦ ଗାଥାର ଯେ ଅର୍ଥେ | ।୨। |
| ବୋଲୁଛି ରାଧିକା ସୁନ୍ଦରୀ | । | ନିଚୟେ ନଇଲେ ମୁରାରି | ।୩। |
| ଆନ କେହୁଣି ନାରୀ ତୁଲେ | । | କ୍ରୀଡ଼ା କରୁଛି ଏକାନ୍ତରେ | ।୪। |
| ସେ ସ୍ତିରୀ କେମନ୍ତ ଅଟଇ | । | ଗୋ ତହୁଁ ଅଧିକ ଘଟଇ | ।୫। |
| ଏମନ୍ତ ମଣି ହେଉଅଛି | । | ଅତି ଖିନ୍ନାଳୀ ସେ ମୃଗାଛି | ।୬। |
| କାମଦେବଙ୍କୁ ଯେ ରୁଚନ୍ତା | । | ବେଶ ସେ ଧରିଛି ବନିତା | ।୭। |
| ଖୋସାରୁ ପୁଷ୍ପମାନେ ତାର | । | ଫିଟିଣ ପଡୁଅଛି ତଳ | ।୮। |
| ସେ ଖୋସା କେମନ୍ତ ତା ପୁଣି | । | ଅଳପ ଫିଟିଛି ମିତଣି | ।୯। |
| ସେ ଯେଣୁ ଏମନ୍ତ ହୋଇଛି | । | କୃଷ୍ଣ ନ ପାରେ ତାକୁ ମୂର୍ଚ୍ଛି | ।୧୦। |

ଗୀତ -

*ହରିପରିରମ୍ଭଣବଳିତବିକାରା ।*
*କୁଚକଳଶୋପରି ତରଳିତହାରା ।।୨।।*

ଅର୍ଥ -

| | | | |
|---|---|---|---|
| ହରି ସଙ୍ଗତେ ପରିରମ୍ଭ | । | ଯେ ସ୍ତିରୀ କରନ୍ତେ ଆରମ୍ଭ | ।୧୧। |
| ଚଳିତ ହୋଇଥିବ ଆର | । | ହୃଦରେ ଯେ କାମ ବିକାର | ।୧୨। |
| କୁଚ କଳଶ ପରେ ତାର | । | ଚଞ୍ଚଳ ଶୋହି ଅଛି ହାର | ।୧୩। |

ଗୀତ -

*ବିଚଳଦଳକଲଳିତାନନଚନ୍ଦ୍ରା ।*
*ତଦଧରପାନରଭସକୃତତନ୍ଦ୍ରା ॥୩॥*

ଅର୍ଥ -

ଲଲାଟ ପଟରେ ତାହାର । ଅଳକା ବିକାଶେ ସୁନ୍ଦର ।୧୪।
ତେଣୁ କରି ଲଳିତ ହୋଇଁ । ତା ମୁଖ ଚନ୍ଦ୍ର ଅଛି ଶୋହି ।୧୫।
ଏମନ୍ତ ନାୟିକା ଅଧର । ପାନ କରନ୍ତେ ଚକ୍ରଧର ।୧୬।
ବଡ଼ ଆନନ୍ଦ ହୋଇଅଛି । ମନରେ ମରି ସେ ମୃଗାକ୍ଷି ।୧୭।

ଗୀତ -

*ଚଞ୍ଚଳକୁଣ୍ଡଳଲଳିତକପୋଳା ।*
*ମୁଖରିତରସନଜଘନଗତିଲୋଳା ॥୪॥*

ଅର୍ଥ -

ଗଣ୍ଡ ଯୁଗଳେ ଭଲା ତାର । ଚଳିତ ହୋଇଛି କୁଣ୍ଡଳ ।୧୮।
ଏଣୁ କରି ଲାବଣ୍ୟ ହୋଇ । କପୋଳପାଳି ଅଛି ଶୋହି ।୧୯।
ଜଘନ ବେନି ଚଳିବାରେ । କଟି ମେଖଳା ଧ୍ୱନି କରେ ।୨୦।

ଗୀତ -

*ଦୟିତବିଲୋକିତଲଜ୍ଜିତହସିତା ।*
*ବହୁବିଧକୂଜିତରତିରସରସିତା ॥୫॥*

ଅର୍ଥ -

ଶ୍ରୀକୃଷ୍ଣ ଚାହିଁବାରୁ କରି । ଲଜ୍ଜା ପାଇଣ ସେ ସୁନ୍ଦରୀ ।୨୧।
ରତି ସମୟେ ହସୁଥିବ । ନାନା ରସରେ ରସିଥିବ ।୨୨।
ହରିକି ମୃଦୁବାଣୀ କରି । ଭାଷୁଣ ଥିବ ସେ ସୁନ୍ଦରୀ ।୨୩।

ଗୀତ -

*ବିପୁଳପୁଲକପୃଥୁବେପଥୁଭଙ୍ଗା ।*
*ଶ୍ୱସିତନିମୀଳିତବିକସଦନଙ୍ଗା ॥୬॥*

ଅର୍ଥ -

| | | | |
|---|---|---|---|
| ବହୁତ ପୁଲକ ତାହାର | । | ଶରୀର ହେଉଥିବ ଆର | ।୨୪। |
| ବେପଥୁ କମ୍ପିବାକୁ କହି | । | ସେ ତାର ଭଗ୍ନ ଥିବ ହୋଇ | ।୨୫। |
| ନିଃଶ୍ୱାସ ଖର ବହୁଅଛି | । | ମିଳିତ ଭାବରେ ହୋଇଛି | ।୨୬। |
| ଏଣୁକରି କାମ ବିକାର | । | ବହୁତ ବିକାସୁଛି ତାର | ।୨୭। |

ଗୀତ -

*ଶ୍ରମଜଳକଣଭରସୁଭଗଶରୀରା ।*
*ପରିପତିତୋରସି ରତିରଣଧୀରା ।।୭।।*

ଅର୍ଥ -

| | | | |
|---|---|---|---|
| ଉପରେ ଥାଇଣ ସୁନ୍ଦରୀ | । | ବହୁତ ବିପରୀତ କରି | ।୨୮। |
| ହରିଙ୍କି ରମିଲା ସେ ଯେଣୁ | । | ବହୁଛି ଶ୍ରମଝାଳ ତେଣୁ | ।୨୯। |
| ଏଣୁ ତା ସୁଭଗ ଶରୀର | । | ଦିଶଇ ଅତ୍ୟନ୍ତ ସୁନ୍ଦର | ।୩୦। |
| ରତିଯୁଦ୍ଧକୁ ସେ ତରୁଣୀ | । | ବହୁତ ଅଟଇ ସିହାଣୀ | ।୩୧। |
| ଏମନ୍ତ ନାୟିକା କୃଷ୍ଣର | । | ପଡ଼ିଛି ହୃଦସ୍ଥ ଉପର | ।୩୨। |
| ହରି ହି ମୁରୁଛି ନ ପାରି | । | ତା ତୁଲେ ନାନା କ୍ରୀଡ଼ା କରି | ।୩୩। |

ଭଣିତା -

*ଶ୍ରୀଜୟଦେବଭଣିତହରିରମିତମ୍ ।*
*କଳିକଳୁଷଂ ଜନୟତୁ ପରିଶମିତମ୍ ।।୮।।*

ବିରହପାଣ୍ଡୁମୁରାରିମୁଖାମ୍ବୁଜ-
ଦ୍ୟୁତିରୟଂ ତିରୟନ୍ନପି ବେଦନାମ୍ ।
ବିଧୁରତୀବ ତନୋତି ମନୋଭୁବଃ
ସୁହୃଦୟେ ହୃଦୟେ ମଦନବ୍ୟଥାମ୍ ।। ଶ୍ଲୋକ-୪୨ ।।

ଅର୍ଥ -

| | | | |
|---|---|---|---|
| ପୁଣି ଦୂତିକା ମୁଖ ଚାହିଁ | । | ରାଧିକା ବୋଲଇ ଗୋ ସହି | ।୩୪। |
| ଏ ବିଧୁ ବିଧୂର ବହୁତ | । | ହୃଦରେ କରୁଅଛି ଜାତ | ।୩୫। |

ଯେଣୁ ସେ କରୁଅଛି ବ୍ୟଥା । ତୋ ଆଗେ କହିବା ସେ କଥା ।୩୬।
ସେ ବିଧୁ ହୋଇଛି କେମନ୍ତ । ତହିଁର କହିବା ତଦନ୍ତ ।୩୭।
ବିରହେ ପାଣ୍ଡୁ ଅଛି ହୋଇ । ମୁରାରି ମୁଖପଦ୍ମ ସହି ।୩୮।
ଏମନ୍ତ ପ୍ରାଏ ଯୋଡ଼ି କର । ହୋଇଛି ଯେବଣ ଚତୁର ।୩୯।
ମଦନ ବାଧା ଏଣୁ କରି । ବହୁତ ଜଣାଉଛି ଶରୀ ।୪୦।
ସୁଜନେ ଶୁଣ ଏକମନେ । ହରିରସିତ ଗୀତ ଏଣେ ।୪୧।
ତୁମ୍ଭର କଳି କଲଷନ୍ତୁ । ଏ ଗୀତ ସମସ୍ତ ନାଶନ୍ତୁ ।୪୨।
ଏ ଧ୍ରୁବ ବଚନ ପ୍ରକାଶ । ଚତୁର୍ଦ୍ଦଶମ ଗାଥା ଶେଷ ।୪୩।
ମୂଢ଼ ବଜରି ଦାସ ଭଣେ । ନିରତେ ଗୋବିନ୍ଦ ଚରଣେ ।୪୪।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ଅନୁଭବବର୍ଣ୍ଣନେ*
*ମୂଢ଼ବଜରିଦାସେନ କୃତୌ ନାମ*
*ଷୋଡ଼ଶୋଽଧ୍ୟାୟଃ ।*

# ସପ୍ତଦଶ ଅଧ୍ୟାୟ

(ଗୁର୍ଜ୍ଜରୀରାଗେଣ ଗୀୟତେ)

*ସମୁଦିତମଦନେ ରମଣୀବଦନେ ଚୁମ୍ବନବଳିତାଧରେ ।*
*ମୃଗମଦତିଳକଂ ଲିଖତି ସପୁଲକଂ ମୃଗମିବ ରଜନୀକରେ ।*
*ରମତେ ଯମୁନାପୁଳିନବନେ ବିଜୟୀ ମୁରାରିରଧୁନା ॥ ଧ୍ରୁବମ୍-୧ ॥*

ଅର୍ଥ -

ଶୁଣ ସୁବୁଦ୍ଧି ସାଧୁଜନ । ଯେ ଅର୍ଥଗୋବିନ୍ଦ ଲେଖନ ।୧।
ଗୁର୍ଜ୍ଜରୀ ରାଗେଣ ଗୀୟତେ । ପଞ୍ଚଦଶମ ଗାଥା ଅର୍ଥେ ।୨।
ରାଧିକା ଦୂତୀ ଆଗେ କହି । ଶୁଣିବୁଟି କି ଆଗୋ ସହି ।୩।
ଭୋ ସଖି ଯମୁନାର ତୀରେ । ପୁଳିନ କାନନ ଭିତରେ ।୪।
ମୁରାରି ଅନେକ ଯୁବତୀ । ରମନ୍ତି ସଙ୍ଗତରେ ଘେନି ।୫।
କେ ମତ୍ତ ହୋଇଛି ମୁରାରି । ତୋ ଆଗେ କହିବା ବିସ୍ତାରି ।୬।
କାମକଳାରେ ଗୋ ଜିଣନ୍ତା । ହୋଇଣଛନ୍ତି ସେ ବନିତା ।୭।
ପ୍ରକୃଷ୍ଟ ହୋଇଛି ଯେ କାମ । ଏକଇ ରମଣୀ ଉତ୍ତମ ।୮।
ବଦନେ ପତା(ତ୍ରା)ବଳି ହରି । ଲିହୁଛି ଅତି ଯତ୍ନ କରି ।୯।
ମୁଖ ତା କେମନ୍ତ ଅଟଇ । ଚୁମ୍ବନେ ଲାବଣ୍ୟ ଝଟଇ ।୧୦।
ତିଳକ ଦିଶଇ ଏମନ୍ତ । ଚନ୍ଦ୍ରମା ବିରାଜେ ଯେମନ୍ତ ।୧୧।

ଗୀତ -

*ଘନଚୟରୁଚିରେ ରଚୟତି ଚିକୁରେ ତରଳିତତରୁଣାନନେ ।*
*କୁରୁବକକୁସୁମଂ ଚପଳାସୁଷମଂ ରତିପତିମୃଗକାନନେ ॥୨॥*

ଅର୍ଥ -

ଘନ ମେଘର ପ୍ରାଏ ତାର । ଚିକୁର ଦିଶଇ ସୁନ୍ଦର ।୧୨।
ସେ କେଶ ସାଙ୍ଗୋଡ଼ଣ ହରି । କୁରୁବକ କୁସୁମ ଭରି ।୧୩।

କୁରୁବକ ଯାହାକୁ କହି । ଦାସୀକରଣ୍ଟୀ ସେ ଅଟଇ ।୧୪।
କୁସୁମମାନ ଖୋସିବାରେ । କେମନ୍ତ ପ୍ରାଏ ଶୋଭା କରେ ।୧୫।
ଘନ ମେଘରେ କି ସେ ଅବା । ବିଜୁଳି ଝଟ ଝଟ ଆଭା ।୧୬।
କେମନ୍ତ ହୋଇଛି ସେ ନାରୀ । ଆନନ ଚଞ୍ଚଳ ତାହାରି ।୧୭।
କେଶବ ପ୍ରାଏ ତେଣୁ କରି । ଶୋଭା ପାଉଛି ସେ ସୁନ୍ଦରୀ ।୧୮।
ରତିର ପତି ଯେ ମଦନ । ସେ ଯେହ୍ନେ କୁରଙ୍ଗୀ ମଧେଣ ।୧୯।
ସେ ନାରୀ କେଶବ ପାଶରେ । ଏମନ୍ତ ପ୍ରାଏ ଶୋଭା କରେ ।୨୦।

ଗୀତ -

*ଘଟୟତି ସୁଘନେ କୁଚଯୁଗଗଗନେ ମୃଗମଦରୁଚିରୁଷିତେ ।*
*ମଣିସରମମଳଂ ତାରକପଟଳଂ ନଖପଦଶଶିଭୂଷିତେ ॥୩॥*

ଅର୍ଥ -

ମୁରାରି ସେ ନାରୀ କୁଚରେ । ମଣିସର ଘଟାଏ ପରେ ।୨୧।
କେମନ୍ତ କୁଚଯୁଗ ତାର । କସ୍ତୁରୀ ଲେପନ୍ତେ ସୁନ୍ଦର ।୨୨।
ସେ କୁଚଯୁଗ ପୁଣି ତାର । ହୋଇଲା ଆକାଶ ପ୍ରକାର ।୨୩।
ତଥିରେ ନଖକ୍ଷତମା... । ହୋଇଲା ଚନ୍ଦ୍ରମା ଯେସନ ।୨୪।
ନକ୍ଷତ୍ର ପ୍ରାଏ ମଣିମାନେ । ଦିଶିଲେ ସେ କୁଚ ଗଗନେ ।୨୫।

ଗୀତ -

*ଜିତବିସଶକଳେ ମୃଦୁଭୁଜଯୁଗଳେ କରତଳନଳିନୀଦଳେ ।*
*ମରକତବଳୟଂ ମଧୁକରନିଚୟଂ ବିତରତି ହିମଶୀତଳେ ॥୪॥*

ଅର୍ଥ -

ମୃଦୁ କୋମଳ ତାର ଭୁଜେ । ମ୍ରକତ ବଳୟ ବିରାଜେ ।୨୬।
କେହେଣ୍ଟେ ସେ ଭୁଜ ଯୁଗଳ । ଜିତ ଯେ ଜିଣିଲା ମୃଣାଳ ।୨୭।
ଶକଳ ଯେଟି ଖଣ୍ଡ ହେଲା । ମୃଣାଳ ଖଣ୍ଡକୁ ଜିଣିଲା ।୨୮।
ମୃଣାଳ ପରେ ପତ(ତ୍ର) ଯେହ୍ନେ । କର କମଳ ଦିଶେ ତେହ୍ନେ ।୨୯।
ସେ କର କମଳରେ ତାର । ମ୍ରକତ ବଳୟ ସୁନ୍ଦର ।୩୦।

| | | | |
|---|---|---|---|
| ସେହୁ ମରକତ ବଳୟ | । | ଭ୍ରମର ପନ୍ତିକି ଘଟୟ | ।୩୧। |
| କେହେଣ୍ଡେ ସେ ନଳିନୀ ଜଳ | । | ହିମ ପରାଏକ ଶୀତଳ | ।୩୨। |

ଗୀତ -

ରତିଗୃହଜଘନେ ବିପୁଳାପଘନେ ମନସିଜକନକାସନେ ।
ମଣିମୟରସନଂ ତୋରଣହସନଂ ବିକିରତି କୃତବାସନେ ।।୫।।

ଅର୍ଥ -

| | | | |
|---|---|---|---|
| ପୁଣି ସେ ଯୁବତୀର ଶୋଭା | । | କେତେହେଁ କହିବି ଗୋ ଅବା | ।୩୩। |
| ରତିଗୃହ ଜଘନ ଦୁଇ | । | ସେ ବଡ଼ ସୁନ୍ଦରଛି ହୋଇ | ।୩୪। |
| ଅପଘ୍ନ ଶରୀର ତାହାର | । | ଦେଖି ଢଳିବ ତାହା ମାର | ।୩୫। |
| ପୁଣି ଜଘନ ବେନି ତାର | । | କେମନ୍ତ ଦିଶେ ପଟାନ୍ତର | ।୩୬। |
| ବସିବା ଅର୍ଥେ ନଙ୍ଗରାଏ | । | କନକ ଆସନ ପରାଏ | ।୩୭। |
| ସେ ସ୍ତିରୀ ରତିଗୃହେ ହରି | । | ମଣି ମାଣିକ୍ୟ ଯତ୍ନ କରି | ।୩୮। |
| ସଜ କରିଛି ସ୍ନେହଭରେ | । | କଟି ମେଖଳା ଆଦି ଭରେ | ।୩୯। |
| ପୁଣି ତା ରତିଗୃହ ବେନି | । | ସୌରଭ ନାନା ଗନ୍ଧ ଘେନି | ।୪୦। |
| ବିପରୀତ ରମ୍ଭା ପରାଏ | । | ପୁଣି ଜଘନ ତାର ଶୋହେ | ।୪୧। |

ଗୀତ -

ଚରଣକିଶଳୟେ କମଳାନିଳୟେ ନଖମଣିଗଣପୂଜିତେ ।
ବହିରପବରଣଂ ଯାବକଭରଣଂ ଜନୟତି ହୃଦି ଯୋଜିତେ ।।୬।।

ଅର୍ଥ -

| | | | |
|---|---|---|---|
| ସେ ସ୍ତିରୀ ଚରଣରେ ହରି | । | ଅଳତା ଦିଏ ହୃଦେ ଧରି | ।୪୨। |
| ପୁଣି ତା ଚରଣ କେମନ୍ତ | । | ନବ ପଲ୍ଲବେ ପରି ଯୁକ୍ତ | ।୪୩। |
| ଅଳତା ଦେବା ଏ ମୁରାରି | । | ସୁନ୍ଦର ଦିଶୁଛି ଅପାରି | ।୪୪। |
| କେମନ୍ତ ଦିଶୁଛି ସେ ଅବା | । | ତୋ ଆଗେ ବୁଝାଇ କହିବା | ।୪୫। |
| କମଳା ଲକ୍ଷ୍ମୀକି ଯେ କହି | । | ସେ ବିଜେ କଲା ପ୍ରାଏ ଶୋହି | ।୪୬। |
| ନଖମାନେ ପାଦରେ ଛନ୍ତି | । | ମଣି ସମୂହ କି ଦିଶନ୍ତି | ।୪୭। |

ଏମନ୍ତ ପାଦରେ ମୁରାରି । ଅଳତା ଯୋଜି ସାର କରି ।୪୮।
ଆପଣା ହୃଦୟରେ ଆଣି । ଲଗାଉଅଛି ଚିହ୍ନ ପୁଣି ।୪୯।

ଗୀତ -

*ଧ୍ୟାସ୍ୱତି ସୁଭ୍ରୁଣଂ କାମପି ସୁଦୃଶଂ ଖଳହଳଧରସୋଦରେ ।*
*କିମଫଳମବଶଂ ଚିରମିହ ବିରସଂ ବଦ ସଖି ବିଟପୋଦରେ ॥୭॥*

ଅର୍ଥ -

ଭୋ ସଖି ଏ ଲତା ଗୃହରେ । କିପାଁ ମୁଁ ଥିବି ବିଅର୍ଥରେ ।୫୦।
ଏମନ୍ତ ବୋଲୁ କି ଲୋ ସହି । ତାପ ତୁ କରୁଛୁ କିପାଇଁ ।୫୧।
ତାହା କହଇଁ ତୋତେ ଶୁଣ । ତାପ ମୋହର ଯେ କାରଣ ।୫୨।
କେହୁଣି ଯୁବତୀକି ହରି । ମୋହ ସଦୃଶ ପ୍ରାଏ କରି ।୫୩।
ଧ୍ୟାନ କରିଛି ଧରି ମନେ । ଗୁଣ ଅବିଗୁଣ ନ ଜାଣେ ।୫୪।
ହଳଧର ଯେ ବଳଦେବ । ତାହାଙ୍କ ଭାଇ ଯେ ମାଧବ ।୫୫।
ହଳ ମୂଷଳ ଧଇଲାର । ଲୋକର ଗୁଣ କି ବିଚାର ।୫୬।

ଭଣିତା -

*ଇହ ରସଭଣନେ କୃତହରିଗୁଣନେ ମଧୁରିପୁପଦସେବକେ ।*
*କଳିଯୁଗଚରିତଂ ନ ବସତୁ ଦୁରିତଂ କବିନୃପଜୟଦେବକେ ॥୮॥*

ନାସ୍ୱାତଃ ସଖି ନିର୍ଦ୍ଦୟୋ ଯଦି ଶଠସ୍ତ୍ୱଂ ଦୂତି କିଂ ଦୂୟସେ
ସ୍ୱଚ୍ଛନ୍ଦଂ ବହୁବଲ୍ଲଭଃ ସ ରମତେ କିଂ ତତ୍ର ତେ ଦୂଷଣମ୍ ।
ପଶ୍ୟାଦ୍ୟ ପ୍ରିୟସଙ୍ଗମାୟ ଦୟିତସ୍ୟାକୃଷ୍ୟମାଣଂ ଗୁଣୈ-
ରୁତ୍କଣ୍ଠାର୍ତ୍ତିଭରାଦିବ ସ୍ଫୁଟମିଦଂ ଚେତଃ ସ୍ୱୟଂ ଯାସ୍ୟତି ॥ ଶ୍ଳୋକ-୪୩ ॥

ପୁଣି ରାଧିକା ପ୍ରତି ବାଣୀ । ସଖୀ ମୁଖକୁ ଚାହିଁ ଭଣି ।୫୭।
ହେ ସଖି ସେ ବଡ଼ ଗଣ୍ଡିଆ । ବଜ୍ରହୁଁ କଠିନ ତା ହିଆ ।୫୮।
ତୋ ଆଣିଗଲାରେ ନଇଲା । ଏଣୁ ମୋତେ ନିର୍ଦ୍ଦୟା ହେଲା ।୫୯।
ସେ ଯେବେ ନଇଲା ଗୋ ସଖି । ତୋହର କି ଦୋଷ ଦେଖି ।୬୦।

| | | | |
|---|---|---|---|
| ବହୁତ ସ୍ତିରୀର ସେ କାନ୍ତ | । | ତା ଇଚ୍ଛା ସୁଖରେ ରମିତ | ।୬୧। |
| ମୋହ ପରାଏ ହୋଇ ତାର | । | କେତେ ଯୁବତୀ ନାହିଁ ଆର | ।୬୨। |
| ମୋହର ସିନା କେହି ନାହିଁ | । | ତାହାଙ୍କ ବିନୁ ଆନ ସହି | ।୬୩। |
| ନିଶ୍ଚଏ ଜାଣିଲି ମୋ ଠାର | । | ଟିକିଏ ଦୟା ନାହିଁ ତାର | ।୬୪। |
| କି ଦୋଷ କଲି ମୁଁ ତାହାକୁ | । | କିପାଇଁ ଛାଡ଼ିଲା ସେ ମୁକୁ | ।୬୫। |
| ଭୋ ସଖି କିଛି ଦୋଷ ମୋର | । | ତାହାକୁ ନାହିଁଟି କଲାର | ।୬୬। |
| ଆଜ ମୋହର ଚିତ୍ତ ସଖି | । | ବଳିଛି ଶ୍ରୀକୃଷ୍ଣ ଚହିଁକି | ।୬୭। |
| କୃଷ୍ଣର ଗୁଣି ଗୁଣମାନ | । | ଆନନ୍ଦ ହେଉଛି ମୋ ମନ | ।୬୮। |
| ଏଣୁକରି ବେଦନା ମୋର | । | ହୃଦରୁଁ ଯାଇଁ ସିନା ଦୂର | ।୬୯। |
| ତୁ ଖେଦ ନ ପାଅ ଗୋ ଆଉ | । | ସେ କେତେବେଳେ ଥିବ ଆଉ | ।୭୦। |
| ଏ କଳିଯୁଗର ଚରିତ | । | ସୁଜନ ଜନେ କର ହିତ | ।୭୧। |
| ମଧୁରିପୁ ଯେ ବାସୁଦେବ | । | ତାହାଙ୍କ ପଦ୍ମପାଦେ ସେବ | ।୭୨। |
| ଧ୍ରୁବ ବଚନ ଏ ପ୍ରକାଶ | । | ପଞ୍ଚଦଶମ ଗାଥା ଶେଷ | ।୭୩। |
| ବଜରି ଦାସ ମୂଢ଼ମତି | । | ସୁଜନ ଚରଣରେ ଚିନ୍ତି | ।୭୪। |

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ଈର୍ଷାଲୁବର୍ଣ୍ଣନେ*

*ମୂଢ଼ବଜରିଦାସେନ କୃତୌ ନାମ*

*ସପ୍ତଦଶୋଽଧ୍ୟାୟଃ ।*

# ଅଷ୍ଟାଦଶ ଅଧ୍ୟାୟ

(ବରାଡ଼ିରାଗେଣ ଗୀୟତେ)

ଗୀତ -

*ଅନିଳତରଳକୁବଳୟନୟନେନ ।*
*ତପତି ନ ସା କିଶଳୟଶୟନେନ ।*
*ସଖି ଯା ରମିତା ବନମାଳିନା ॥ ଧ୍ରୁବମ୍-୧ ॥*

ଅର୍ଥ -

ସୁଜନେ ସାବଧାନେ ଶୁଣ । ଯେ ଅର୍ଥଗୋବିନ୍ଦ ଲେଖନ ।୧।
ଦେଶି ବରାଡ଼ି ରାଗେ ଗୀତେ । ଷଷ୍ଠଦଶମ ଗାଥା ଅର୍ଥେ ।୨।
ରାଧିକା ଦୂତୀମୁଖ ଚାହିଁ । ବୋଲଇ ଶୁଣ ମୋର ସହି ।୩।
ଯେବଣ ସ୍ତିରୀକି ଗୋ ବାଳୀ । ଆଜ ରମିଲା ବନମାଳୀ ।୪।
ତାର ଚରିତ ତୋର ଆଗେ । କହିବା ଯେବା ଯେଉଁ ବାଗେ ।୫।
ସେ ସ୍ତିରୀ କମଳ ଶଯ୍ୟାରେ । ଶୋଇଲା ନାହିଁନା ଉପରେ ।୬।
ତାହାକୁ ବନମାଳୀ ଦେଖି । ବହୁତ ହୋଉଅଛି ସୁଖୀ ।୭।
ସେ ସ୍ତିରୀ କେମନ୍ତ ଅଟଇ । ମୋ ଠହୁଁ ସିହାଣି ଅଟଇ ।୮।
ଏଣୁ ତାହାକୁ ବନମାଳୀ । ଚଞ୍ଚଳ ଚାହୁଁଅଛି ଭାଳି ।୯।
ଅନିଳ ପବନକୁ କହି । ତାର ପରାୟ ଚକ୍ଷୁ ଦୁଇ ।୧୦।
ଚଞ୍ଚଳ ଅଟଇ ଯାହାର । ଚାହାଣି ଅଟଇ ତରଳ ।୧୧।
ଇନ୍ଦୀବର ପରାଏ ଆଭା । ପୁଣି ଲୋଚନ ବେନି ଶୋଭା ।୧୨।
ପୁଣି ସେ ଲୋଚନ ଯୁଗଳ । ଫୁଟିଲା ଯେମନ୍ତ କମଳ ।୧୩।

ଗୀତ -

*ବିକସିତସରସିଜଲଳିତମୁଖେନ ।*
*ସ୍ଫୁଟତି ନ ସା ମନସିଜବିଶିଖେନ ॥୨॥*

ଅର୍ଥ -

| | | | |
|---|---|---|---|
| ପୁଣି କେମନ୍ତ ପ୍ରାଏ ଅବା | । | ଶ୍ରୀକୃଷ୍ଣ ମୁଖ ପାଏ ଶୋଭା | ।୧୪। |
| ଫୁଟିଲା ପଦ୍ମପ୍ରାଏ ତାର | । | ବଦନ ଦିଶଇ ସୁନ୍ଦର | ।୧୫। |
| ସେ ସ୍ତିରୀ ମନସିଜ ବାଣେ | । | ଭେଦି ନୋହିଲା ନା ଗୋ ଏଣେ | ।୧୬। |

ଗୀତ -

*ଅମୃତ ମଧୁର ମୃଦୁରସବଚନେନ ।*
*ଜ୍ୱଳତି ନ ସା ମଳୟଜରଚନେନ ॥୩॥*

ଅର୍ଥ -

| | | | |
|---|---|---|---|
| ଯାକୁ ରସିଲା ବନମାଳୀ | । | ଚନ୍ଦନେ ତା ଅଙ୍ଗ ନ ଜଳି | ।୧୭। |
| କୃଷ୍ଣ ସେ ଯୁବତୀକି ଚାହିଁ | । | ବହୁତ ଦୟା ହୃଦେ ବହି | ।୧୮। |
| ଅମୃତ ମଧୁର ବଚନ | । | କହି ତୋଷିଲା ତାର ମନ | ।୧୯। |

ଗୀତ -

*ସ୍ଥଳଜଳରୁହରୁଚିକରଚରଣେନ*
*ଲୁଠତି ନ ସା ହିମକରକିରଣେନ ॥୪॥*

ଅର୍ଥ -

| | | | |
|---|---|---|---|
| ସ୍ଥଳପଦ୍ମରୁ ରୁଚିକର | । | ପଦ କର କମଳ ଯାର | ।୨୦। |
| ସେ ସ୍ତିରୀ ହୃଦରେ ଭିତ୍‌ନ୍ତେ | । | ଭେଦି ନ ପାରେ ମନୁରଥେ | ।୨୧। |
| ଭୋ ସଖି ସେ ସ୍ତିରୀ ମୋହର | । | ପ୍ରାଏ ନୋହଇନା ବିଧୁର | ।୨୨। |
| ଚନ୍ଦ୍ର କିରଣମାନଙ୍କରେ | । | କଲୁ ନାହିଁନା ସେ ବିକଳେ | ।୨୩। |
| ବିରହେ କରି ତନୁ ତାର | । | ଦହି ନୋହୁଛି ନା ଭିତର | ।୨୪। |

ଗୀତ -

*ସଜଳଜଳଦସମୁଦୟରୁଚିରେଣ ।*
*ଦଳତି ନ ସା ହୃଦି ବିରହଭରେଣ ॥୫॥*

ଅର୍ଥ -

| | | | |
|---|---|---|---|
| କୃଷ୍ଣ କେମନ୍ତ ହୋଇଅଛି | । | କହଇଁ ଶୁଣ ଗୋ ମୃଗାକ୍ଷି | ।୨୫। |
| ନବ ଜଳଦ ମେଘ ପ୍ରାଏ | । | ଶ୍ରୀକୃଷ୍ଣ ଅଙ୍ଗ ଶୋଭା ପାଏ | ।୨୬। |

ଏମନ୍ତ କୃଷ୍ଣକୁ ଯେ ପୁଣି । ଏକାନ୍ତେ ରମିଲା ମିତଣୀ ।୨୭।
ବିରହଭର ଯେତେ ତାର । ହୃଦରୁ ହୋଇଲା ଅନ୍ତର ।୨୮।

ଗୀତ -

*କନକନିକଷରୁଚିଶୁଚିବସନେନ ।*
*ଶ୍ୱସିତି ନ ସା ପରିଜନହସନେନ ॥୨॥*

ଅର୍ଥ -

ସୁବର୍ଣ୍ଣ ପ୍ରାଏକ ସୁନ୍ଦର । ବସ୍ତ୍ର ପିନ୍ଧିଛି ଦାମୋଦର ।୨୯।
ସେ ସ୍ତିରୀ ହୃଦରେ ଲାଗନ୍ତେ । କିସ କରିବ ମନ୍ମଥେ ।୩୦।
ସେ ସ୍ତିରୀ ପରିଜନମାନେ । ହସନ୍ତେ ତାପ କରି ମନେ ।୩୧।
ନିଃଶ୍ୱାସ ବେଗ ବେଗ କରି । ଛାଡୁ ନାହିଁନା ସେ ସୁନ୍ଦରୀ ।୩୨।

ଗୀତ -

*ସକଳଭୁବନଜନବରତରୁଣେନ ।*
*ବହତି ନ ସା ରୁଜମତିକରୁଣେନ ॥୭॥*

ଅର୍ଥ -

ଧନ୍ୟ ସେ ଭାଗ୍ୟବନ୍ତ ନାରୀ । ଯାକୁ ରମିଲା ଆଜ ହରି ।୩୩।
ସେ ସ୍ତିରୀ ଅତି ହିଁ କରୁଣେ । ବହି ହେଉ ନାହିଁନା ଏଣେ ।୩୪।
କୃଷ୍ଣ କେମନ୍ତ ହୋଇଅଛି । ଲକ୍ଷକୁ କେ ପାରିବ ଲକ୍ଷି ।୩୫।
ସକଳ ଭୁବନର ସାର । ଯୁବା ପୁରୁଷମାନଙ୍କର ।୩୬।
ମଧ୍ୟେ ଶ୍ରେଷ୍ଠ ଅଟଇ ହରି । କି ପୁଣ୍ୟ କଲା ସେ ଚତୁରୀ ।୩୭।
ଯେଣୁ ତା ଅଙ୍ଗେ ହରି ଅଙ୍ଗ । ଲାଗିଲା ଡରିଲା ଅନଙ୍ଗ ।୩୮।
ମୁଁ ନାରୀ ଅଭାଗିନୀ ସରି । ମୋ ପାଖେ ନଇଲେ ମୁରାରି ।୩୯।

ଭଣିତା -

*ଶ୍ରୀଜୟଦେବଭଣିତବଚନେନ ।*
*ପ୍ରବିଶତୁ ହରିରପି ହୃଦୟମନେନ ॥୮॥*

ମନୋଭବାନନ୍ଦନଚନ୍ଦନାନିଳ ପ୍ରସୀଦ ରେ ଦକ୍ଷିଣ ମୁଞ୍ଚ ବାମତାମ୍ ।
କ୍ଷଣଂ ଜଗତ୍ପ୍ରାଣ ବିଧାୟ ମାଧବଂ ପୁରୋ ମମ ପ୍ରାଣହରୋ ଭବିଷ୍ୟସି ।।ଶ୍ଳୋକ-୪୪।।

ମଳୟ ପବନକୁ ଚାହିଁ । ଚାଟୁ କରଇ ପୁଣି ରାହୀ ।୪୦।
ଶୁଣ ତୁ ହେ ମଳୟାନିଳ । ନ କର ମୋ ମନ ବିକଳ ।୪୧।
କ୍ଷଣେ ବହି ବା ବକ୍ର ହୋଇ । ଛାଡ଼ିଣ ରହ ଶାନ୍ତି ବହି ।୪୨।
କେମନ୍ତ ଅଟୁ ତୁ ଯେ ପୁଣ । ମୁହିଁ କହଇ ତୋର ଗୁଣ ।୪୩।
ମନୋଭବ ଯେ କାମଦେବ । ତୁ ତାକୁ ସମକ୍ଷ ସ୍ୱଭାବ ।୪୪।
ପୁଣି କେମନ୍ତ ପ୍ରାଏ ଅଟୁ । ଜଗତଯାକ ପ୍ରାଣ ଘଟୁ ।୪୫।
ମୋତେ ତୁ କ୍ଷଣେ ମାତ୍ର ସହ । ନୋହିଲେ ଗଲାଟି ଏ ଦେହ ।୪୬।
ମାଧବ ଏ ମୋର ଆଗରେ । ପ୍ରବେଶ ହୋଇଲା ଉତ୍ତାରେ ।୪୭।
ମମ ପରାଣ ପଛେ ହର । ତୋ କୀର୍ତ୍ତି ଥାଉ ସବୁଠାର ।୪୮।

*ରିପୁରିବ ସଖୀସଂଭାଶୋଽୟଂ ଶିଖୀବ ହିମାନିଳୋ*
*ବିଷମିବ ସୁଧାରଶ୍ମିର୍ଯସ୍ମିନ୍ ଦୁନୋତି ମନୋଗତେ ।*
*ହୃଦୟମଦୟେ ତସ୍ମିନ୍ନେବଂ ପୁନର୍ବଳତେ ବଳାତ୍*
*କୁବଳୟଦୃଶାଂ ବାମଃ କାମୋ ନିକାମନିରଙ୍କୁଶଃ ।। ଶ୍ଳୋକ-୪୫ ।।*

ଅର୍ଥ -

ପୁଣି ବିକଳ ହୋଇ ରାହୀ । ବୋଲଇ ଶୁଣ ମୋର ସହି ।୪୯।
ମୋହର କାମନା ଗୋ ସଖି । ବଳିଛି ଶ୍ରୀକୃଷ୍ଣ ଦେଖି ।୫୦।
ସେ କୃଷ୍ଣ କେମନ୍ତ ଅଟଇ । ହୃଦୟ ଆନନ୍ଦ ଅଟଇ ।୫୧।
ଭୋ ସଖି ସଖୀମାନଙ୍କର । ସଙ୍ଗତେ ସମ୍ଭାଷ ଉତ୍ତର ।୫୨।
ସେ ମୋତେ ଶତ୍ରୁପ୍ରାଏ ଦିଶେ । ଗୋବିନ୍ଦ ବିହୁନେ ବିଶେଷେ ।୫୩।
ମଳୟ ପବନ ଗୋ ସହେ । ହିମବନ୍ତକୁ ଚଳି ଯାଏ ।୫୪।
ଯାର ଲାଗନ୍ତେକ ଗୁମାନ । ପ୍ରତ୍ୟକ୍ଷେ ହୁଅନ୍ତି ଚନ୍ଦନ ।୫୫।
ସେ ମୋତେ ଅଗ୍ନି ତେଜ ଜାଣି । ଅଙ୍ଗରେ ଲାଗନ୍ତେ ମିତଣି ।୫୬।
ସୁଧାରଶ୍ମି ଯେ ଚନ୍ଦ୍ର କହି । ସେ ବିଷ ପରାୟ ଲାଗଇ ।୫୭।

ମନୋଗତ ଯେ କାମଦେବ । ସେ ତେଣୁ କଲାକ ଅଭାବ ।୫୮।
ଏମାନେ ଦୁଷ୍ଟ ଆଚରନ୍ତି । ସମସ୍ତେ ତାର ବଶ୍ୟବୃତ୍ତି ।୫୯।
କାମିନୀ ସ୍ତିରୀକି ଯେ କହି । ଏଣେ ସେ କାମ ବକ୍ର ହୋଇ ।୬୦।
ଯହିଁକି କରନ୍ତି ସେ ମନ । ସେ କଥା ହୋଅଇ ବହନ ।୬୧।
ମଳୟ ପବନକୁ କହି । ପୁଣି ହିଁ ବୋଲଇ ସେ ରାହି ।୬୨।

**ବାଧାଂ ବିଧେହି ମଳୟାନିଳ ପଞ୍ଚବାଣ ।**
**ପ୍ରାଣାନ୍ ଗୃହାଣ ନ ଗୃହଂ ପୁନରାଶ୍ରୟିଷ୍ୟେ ।**
**କିଂ ତେ କୃତାନ୍ତଭଗିନି କ୍ଷମୟା ତରଙ୍ଗୈ-**
**ରଙ୍ଗାନି ସିଞ୍ଚ ମମ ଶାମ୍ୟତୁ ଦେହଦାହଃ** ॥ ଶ୍ଳୋକ-୪୬ ॥

ଅର୍ଥ -

ହେ ମ୍ଳୟାନିକ ବାଧାକର । କ୍ଷଣେ ତୁ ମାତ (ତ୍ର) ହୋ ଅସ୍ଥିର ।୬୩।
ହେ ପାଞ୍ଚବାଣ ହେ ମଦନ । ପ୍ରାଣ ତ ଘେନ ମୋ ବହନ ।୬୪।
ନ ଯାଇ ନିଜ ଗୃହ ବାସ । ନାହିଁ ମୋହର ତେଣେ ଆଶ ।୬୫।
ତୋ କୀର୍ତ୍ତି ଥାଉ ଯୁଗେ ଯୁଗେ । ମୋ ପ୍ରାଣ ହର ତୁ ଯେ ଆଗେ ।୬୬।
ଭୋ ଯମବହିଣୀ ଯମୁନେ । ତୁ ମୋତେ ଦୟା କର ମନେ ।୬୭।
ତରଙ୍ଗ ଚଞ୍ଚଳ ଲହରୀ । ପବନ ସଙ୍ଗେ ଯୁକ୍ତ କରି ।୬୮।
ସିଞ୍ଚ ତୁ ମୋ ଦେହ ଉପର । ଦହି ହୋଇବା ଶାନ୍ତି କର ।୬୯।
ଶୁଣ ସୁଜନ ସାଧୁମାନେ । ତୁମ୍ଭ ହୃଦକୁ ଏ ମଦନେ ।୭୦।
ଯୁକ୍ତ ଅଟଇ ଏହୁ ଗୀତ । ଏଣେ ବଳାଅ ସର୍ବେ ଚିତ୍ତ ।୭୧।
ହରି ହୃଦୟରେ ତୁମ୍ଭର । ପ୍ରବେଶ ହେଉ ନିରନ୍ତର ।୭୨।
ଭବସାଗର ଭବ ନାଶ । ଧ୍ରୁବ ବଚନ ନିତ୍ୟେ ଘୋଷ ।୭୩।
ଷଟଦଶମ ଗାଥା ଶେଷ । ବୋଲେ ବଜରି ମୂର୍ତ୍ତ ଦାସ ।୭୪।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ପରପଦକାବ୍ୟେ ମହାଗ୍ରନ୍ଥେ ବିପ୍ରଲବ୍ଧାବର୍ଣ୍ଣନେ*
*ମୂର୍ତ୍ତବଜରିଦାସେନ କୃତୌ ନାଗରନାରାୟଣୋ ନାମ*
*ସପ୍ତମସର୍ଗଃ ।*

# ଊନବିଂଶ ଅଧ୍ୟାୟ

ଅଥ କଥମପି ଯାମିନୀଂ ବିନୀୟ
ସ୍ମରଶରଜର୍ଜରିତାପି ସା ପ୍ରଭାତେ ।
ଅନୁନୟବଚନଂ ବଦନ୍ତମଗ୍ରେ
ପ୍ରଣତମପି ପ୍ରିୟମାହ ସାଭ୍ୟସୂୟମ୍ ॥ ଶ୍ଳୋକ-୪୭ ॥

ଅର୍ଥ -

ଏଥ ଉତ୍ତାରେ ଅନ୍ୟ ବାଣୀ । ଶୁଣ ସୁଜନ ଜନେ ପୁଣି ।୧।
ରାଧିକା କଷ୍ଟ କଷ୍ଟେ ଅତି । ପୁହାଇ ନେଲାକ ସେ ରାତି ।୨।
ସ୍ମର ଯେ ମଦନକୁ କହି । ତା ବାଣେ ଜର୍ଜରିତା ହୋଇ ।୩।
ବସିଣ ଅଛଇ ସୁକେଶୀ । ତାପ ତା ହୃଦରେ ବିଶେଷି ।୪।
ଏମନ୍ତେ ପ୍ରଭାତ କାଳରେ । କୃଷ୍ଣ ମିଳିଲେ ତା ଛାମୁରେ ।୫।
ଅନୟ ବିନୟ ବଚନ । ମାନେ କହନ୍ତି ଘନ ଘନ ।୬।
ପାଏ ପଡ଼ି ଶୋଇଣ ଆର । ବୋଲନ୍ତି ଯେ ଇଚ୍ଛା ତୋହର ।୭।
ଏମନ୍ତ ପ୍ରିୟ ତାକୁ ପୁଣି । କୋପେ ରାଧିକା ବୋଲେ ବାଣୀ ।୮।

[ରାଗଲକ୍ଷଣ- ସରୋବରସ୍ଥେ ସ୍ଫଟିକସ୍ୟ ମଣ୍ଡପେ ସରୋରୁହୈଃ ଶଙ୍କରମର୍ଚ୍ଚୟନ୍ତୀ ।
ତାଳପ୍ରୟୋଗୈଃ ପ୍ରତିବଦ୍ଧରାଗା ଗୌରୀ ତନୁର୍ନାରଦ ଭୈରବୀୟମ୍ ॥]

(ଭୈରବରାଗେଣ ଗୀୟତେ)

*ରଜନିଜନିତଗୁରୁଜାଗରରାଗକଷାୟିତମଳସନିମେଷମ୍*
*ବହତି ନୟନମନୁରାଗମିବ ସ୍ଫୁଟମୁଦିତରସାଭିନିବେଶମ୍ ।*
*ହରି ହରି ଯାହି ମାଧବ ଯାହି କେଶବ ମା ବଦ କୈତବବାଦମ୍*
*ତାମନୁସର ସରସୀରୁହଲୋଚନ ଯା ତବ ହରତି ବିଷାଦମ୍ ॥ ଧ୍ରୁବମ୍ -୧ ॥*

ଅର୍ଥ -

| | | |
|---|---|---|
| ଭୈରବ ରାଗେଣ ଗୀୟତେ । | ସପ୍ତଦଶମ ଗାଥା ଅର୍ଥେ | ।୯। |
| ବୋଲନ୍ତି ରାଧିକା ସୁନ୍ଦରୀ । | କୋପେଣ କମ୍ପୁଅଛି ଶରୀ | ।୧୦। |
| ଯାହେ କେଶବ ହେ ମାଧବ । | ଯାହାକୁ ଅନୁସର ଭାବ | ।୧୧। |
| ତାହାକୁ ଅନୁସର ଯାଇଁ । | ଯେଣେ ତୋ ବିଷାଦ ହରଇ | ।୧୨। |
| କୈତବ ବଚନ ତୁ ମୋରେ । | ନ କହି ଯାଅ ଯା ସେଠାରେ | ।୧୩। |
| ରଜନୀ ଉଜାଗର ହୋଇ । | ଥିଲୁ ଯେ ତେଣୁ ଚକ୍ଷୁ ଦୁଇ | ।୧୪। |
| ରାଗ ଦିଶୁଛି ତୋର ହରି । | ଅଳସେ ହୋଇଅଛି ଭାରି | ।୧୫। |
| ତା ସଙ୍ଗେ ଅନୁରାଗ କରି । | ଆଜି ତୁ ଥିଲୁ ହୋ ମୁରାରି | ।୧୬। |
| ସେ ଚିହ୍ନମାନ ତୋର ଠହିଁ । | ଦିଶୁଛି ଭିନ୍ନ ଭିନ୍ନ ହୋଇ | ।୧୭। |

ଗୀତ -

*କଜ୍ଜଳମଳିନବିଲୋଚନଚୁମ୍ବନବିରଚିତନୀଳିମରୂପମ୍ ।*
*ଦଶନବସନମରୁଣଂ ତବ କୃଷ୍ଣ ତନୋତି ତନୋରନୁରୂପମ୍ ॥୨॥*

ଅର୍ଥ -

| | | |
|---|---|---|
| ଯେଉଁ ଅଧର ତୋର ରଙ୍ଗ । | ଅରୁଣ ପ୍ରାଏକ ସୁରଙ୍ଗ । | ।୮। |
| ସେ ଏବେ କୃଷ୍ଣବର୍ଣ୍ଣ ଦିଶେ । | ତୋ ତନୁ ଯେମନ୍ତ ପ୍ରକାଶେ | ।୧୯। |
| ଦଶନ ଦନ୍ତକୁ ଯେ କହି । | ବସନ ବସ୍ତ୍ର ଯେ ଅଟଇ | ।୨୦। |
| ଏହି ହେ ଅନୁରୂପ ତୋର । | କରି ଅଛନ୍ତି କି ବିସ୍ତାର | ।୨୧। |
| ଅରୁଣେ କରି ରକ୍ତ ହୋଇ । | କଜ୍ଜଳେ ମଳିନ ଦିଶଇ | ।୨୨। |
| ଲୋଚନ ଯୁଗଳ ତୋହର । | ଚୁମ୍ବନ ଦେବାରେ ତାହାର | ।୨୩। |
| ବିରଚିତ ହୋଇଛି ହରି । | ନୀଳବର୍ଣ୍ଣ ଦେହକୁ ବାରି | ।୨୪। |
| ଧନ୍ୟ ଜୀବନ ସେ ଚତୁରୀ । | ଆଜ ରମିଲେ ଯାକୁ ହରି | ।୨୫। |

ଗୀତ -

*ବପୁରନୁହରତି ତବ ସ୍ମରସଙ୍ଗରଖରନଖରକ୍ଷତରେଖମ୍ ।*
*ମରକତଶକଳକଳିତକଳଧୌତଲିପେରିବ ରତିଜୟଲେଖମ୍ ॥୩॥*

ଅର୍ଥ -

ଏ ତୋର ବପୁ ଯେ ଶରୀର । ସ୍ମରଣେ ମନ୍ମଥ ବୀର ।୨୬।
ତାର ସଂଗ୍ରାମେ ନଖକ୍ଷତ । ଦେବାଯେଂ ଦିଶୁଛି ବାରିତ ।୨୭।
ସେ କେଣ୍ଠେ ପ୍ରାଏ ଶୋଭାକରେ । ମର୍କତ ପାଷାଣ ଉପରେ ।୨୮।
ରତିର ଜୟଲେଖ ଲିପି । ଲିହିଲା ପ୍ରାଏ ଅଛି ବ୍ୟାପି ।୨୯।
ହୃଦୟ ପାଷାଣ ତୋହର । ନକ୍ଷତ୍ରମାନ ଜୟଗାର ।୩୦।
ଦେଖାଇ ଆସିଅଛୁ ମୋତେ । ଏ ଚିହ୍ନମାନ ତୁ ଯୁଗତେ ।୩୧।
ତୁ ଯାହା କରିଛୁ ଗୁପତ । ତା ଇଛା ସୁଖରେ ବିଦିତ ।୩୨।

ଗୀତ -

*ଚରଣକମଳଗଳଦଲକ୍ତକସିକ୍ତମିଦଂ ତବ ହୃଦୟମୁଦାରମ୍ ।*
*ଦର୍ଶୟତୀବ ବହିର୍ମଦନଦ୍ରୁମନବକିଶଳୟ ପରିବାରମ୍ ॥୪॥*

ଅର୍ଥ -

ଭୋ କୃଷ୍ଣ ଏ ତୋର ଉଦାର । ଉତ୍କର୍ଷ ହେଟି ହୃଦୟର ।୩୩।
ସେ ସ୍ତିରୀ ଚରଣ କମଳ । ଅଳତା ଦିଶେ ଢଳଢଳ ।୩୪।
କେମନ୍ତ ପାଉଛି ସେ ଶୋଭା । କଥାଏ ପଟାନ୍ତର ଦେବା ।୩୫।
ମଦନ ବୃକ୍ଷର ଉପର । ନୂଆ ପଲ୍ଲବ କି ବାହାର ।୩୬।
ଦିଶୁଛି ତେମନ୍ତ ପରାଏ । ତୋ ହୃଦେ ଅଳତାର ପ୍ରାଏ ।୩୭।

ଗୀତ -

*ଦଶନପଦଂ ଭବଦଧରଗତଂ ମମ ଜନୟତି ଚେତସି ଖେଦମ୍ ।*
*କଥୟତି କଥମଧୁନାପି ମୟା ସହ ତବ ବପୁରେତଦଭେଦମ୍ ॥୫॥*

ଅର୍ଥ -

ତୋର ଅଧର ସେ ମୃଗାଛି । ଦନ୍ତକ୍ଷତ ଯେ ଦେଲା ଅଛି ।୩୮।
ସେ ଦନ୍ତ ପଦ ମୋର ଚିତ୍ତ । ବହୁତ ଖେଦ କରେ ଜାତ ।୩୯।
ଏବେହେଁ ଏ ତନୁ ତୋହର । ଅଭେଦ କରିଛି ମୋ ଠାର ।୪୦।
ଯେବେ ଅଭେଦ ତାର ମୋର । ନୋହଇ ଶୁଣ ଚକ୍ରଧର ।୪୧।
ଗୁପତ ରତି ଚିହ୍ନ ତୋର । ଭେଦ କରାଇଲା ମୋ ଠାର ।୪୨।

ଗୀତ -

*ବହିରିବ ମଳିନତରଂ ତବ କୃଷ୍ଣ ମନୋଽପି ଭବିଷ୍ୟତି ନୂନମ୍ ।*
*କଥମଥ ବଞ୍ଚୟସେ ଜନମନୁଗତମସମଶରଜ୍ୱରଦୂନମ୍ ॥୬॥*

ଅର୍ଥ -

| | | | |
|---|---|---|---|
| ଏକା ତୋ ବାହାର ଏ କଳା | । | ଏମନ୍ତ ନୋହେ ନନ୍ଦବଳା | ।୪୩। |
| ଭିତର କୃଷ୍ଣ କଳା ତୋର | । | ପାପ ହୃଦୟ ନିଚେ ତାର | ।୪୪। |
| ଭିତରେ କୁଟିଳ ନୋହଇ | । | ଯେବେ ତୋହର ଭାବଗ୍ରାହୀ | ।୪୫। |
| ମଦନ ଶରେ ଅନୁଗତ | । | ନିରତେ ହୋଇଛି ଯା ଚିତ୍ତ | ।୪୬। |
| ଏମନ୍ତ ଜନଙ୍କୁ କେମନ୍ତେ | । | ଭଣ୍ଡାଉଅଛୁ ଗୋପୀନାଥେ | ।୪୭। |

ଗୀତ -

*ଭ୍ରମତି ଭବାନବଳାକବଳାୟ ବନେଷୁ କିମତ୍ର ବିଚିତ୍ରମ୍ ।*
*କଥୟତି ପୂତନିକୈବ ବଧୂବଧନିର୍ଦ୍ଦୟବାଳଚରିତ୍ରମ୍ ॥୭॥*

ଅର୍ଥ -

| | | | |
|---|---|---|---|
| ଯୁବା ଯୁବତୀମାନେ ଯେତେ | । | ଅବଳା ବୋଲନ୍ତି ଯୁଗତେ | ।୪୮। |
| ତାହାଙ୍କୁ କବଳର ଅର୍ଥେ | । | ଭ୍ରମୁ ତୁ ଅଛୁ ଏ ବନସ୍ତେ | ।୪୯। |
| ଏମନ୍ତ ନୋହଇ ନା କଥା | । | ତୋର ଯେ ବିଚିତ୍ର ବେବସ୍ଥା | ।୫୦। |
| ବାଳୁତ କାଳହୁଁ ନିର୍ଦ୍ଦୟ | । | ଅଟଇ ଏ ତୋର ହୃଦୟ | ।୫୧। |
| ବଧୂମାନଙ୍କୁ ବଧ କରୁ | । | ଜାଣିଛି ପୂତନା ଠାବରୁ | ।୫୨। |
| ଏମନ୍ତ ଚରିତ ତୁମ୍ଭର | । | ମୁଁ କି ନ ଜାଣେ ଦାମୋଦର | ।୫୩। |

ଭଣିତା -

*ଶ୍ରୀଜୟଦେବଭଣିତରତିବଞ୍ଚିତଖଣ୍ଡିତଯୁବତିବିଳାପମ୍ ।*
*ଶୃଣୁତ ସୁଧାମଧୁରଂ ବିବୁଧାଳୟତୋଽପି ଦୁରାପମ୍ ॥୮॥*

ତଦେବଂ ପଶ୍ୟନ୍ତ୍ୟାଃ ପ୍ରସରଦନୁରାଗଂ ବହିରିବ
ପ୍ରିୟାପାଦାଲକ୍ତଚ୍ଛୁରିତମରୁଣଚ୍ଛାୟହୃଦୟମ୍ ।
ମମାଦ୍ୟ ପ୍ରଖ୍ୟାତପ୍ରଣୟଭରଭଙ୍ଗେନ କିତବ
ତ୍ୱଦାଲୋକଃ ଶୋକାଦପି କିମପି ଲଜ୍ଜାଂ ଜନୟତି ॥ ଶ୍ଲୋକ-୪୮ ॥

ଅର୍ଥ -

| | | | | |
|---|---|---|---|---|
| ଭୋ କୃଷ୍ଣ ଏ ଯେତି ତୋହର | । | ବପୁ ଯେ ଅଟଇ ଶରୀର | । ୫୪ । |
| ଏହା ଦେଖିଣ ଯେଉଁ ଶୋକ | । | ଜାତ ହୋଉଛି ମୋ ଅଧିକ | । ୫୫ । |
| ତହୁଁ ଅଧିକ ଲାଜକର | । | ଏ ତୋର ମୁଖ ଚାହିଁବାର | । ୫୬ । |
| ତୁ ପ୍ରଭୁ ଅନୁରାଗ ମୋତେ | । | କରିଛୁ ଦିଶୁଛି ହେ ଧୂତେ | । ୫୭ । |
| କେମନ୍ତେ ତୋତେ ଦେଖିବାର | । | ଶୋକ ଜାତ ହେଉଛି ମୋର | । ୫୮ । |
| ତୁ ଯେଉଁ ସ୍ତିରୀ ସଙ୍ଗେ ଆଜ | । | ରମଣ କଲୁ ଦେବରାଜ | । ୫୯ । |
| ତାହାର ପାଦର ଅଳତା | । | ଚିହ୍ନ ତୋ ହୃଦରେ ଶୋଭିତା | । ୬୦ । |
| ନୂଆ ଅରୁଣ ଜାଇ ପ୍ରାଏ | । | ଶୋଭା ପାଉଛି ତୋର ଦେହେ | । ୬୧ । |
| ପ୍ରଣୟ ଭୁଥାକୁ ଯେ କହି | । | ଏଣୁ ଅଭୟ ଭଙ୍ଗ ହୋଇ | । ୬୨ । |
| ଏମନ୍ତ ପ୍ରକାରେ ପ୍ରଖ୍ୟାତ | । | ଆଜ ହୋଇଲା ତୋର ସତ | । ୬୩ । |
| ଭୋ ସାଧୁଜନେ ରତିରସେ | । | ବଞ୍ଚିତ ହୋଇଛି ବିଶେଷେ | । ୬୪ । |
| ଏମନ୍ତ ଖଣ୍ଡିତ ନାୟିକା | । | ସ୍ୱଭାବେ ଅଟଇ ରାଧିକା | । ୬୫ । |
| ତାହାଙ୍କ ବିଳାପ ବଚନ | । | ସୁଜନ ଜନମାନେ ଶୁଣ | । ୬୬ । |
| ସୁଧା ଯେ ଅମୃତକୁ କହି | । | ତହୁଁ ମଧୁର ଏ ଅଟଇ | । ୬୭ । |
| ବିବୁଧ ଯେ ଦେବତାଗଣେ | । | ସେ ମହାସୁଖ ପାନ୍ତି ଏଣେ | । ୬୮ । |
| ଏମନ୍ତ ସୁଖରେ ସୁଦିନ | । | ନିରତେ ମଜାଇବା ମନ | । ୬୯ । |
| ଏ ଧ୍ରୁବ ବଚନ ପ୍ରକାଶ | । | ସପ୍ତଦଶମ ଗାଥା ଶେଷ | । ୭୦ । |
| ଗୀତଗୋବିନ୍ଦ ଅର୍ଥମାନ | । | ଅର୍ଥଗୋବିନ୍ଦ ଏ ଲିଖନ | । ୭୧ । |
| ଗୋବିନ୍ଦ ଚରଣ ଯୁଗଳେ | । | ବଜରି ଶରଣ ଫୁକାରେ | । ୭୨ । |

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସବାବ୍ୟେ ମହାଗ୍ରନ୍ଥେ ଖଣ୍ଡିତାବର୍ଣ୍ଣନେ ମୂର୍ତ୍ତବଜରିଦାସେନ କୃତୌ ବିଲକ୍ଷ୍ୟଲକ୍ଷ୍ମୀପତିର୍ନାମ ଅଷ୍ଟମଃ ସର୍ଗଃ ଇତି ଊନବିଂଶାଧ୍ୟାୟଃ ।*

# ବିଂଶତି ଅଧ୍ୟାୟ

**ତାମଥ ମନ୍ମଥଖିନ୍ନାଂ ରତିରସଭିନ୍ନାଂ ବିଷାଦସମ୍ପନ୍ନାମ୍ ।**
**ଅନୁଚିନ୍ତିତହରିଚରିତାଂ କଳହାନ୍ତରିତାମୁବାଚ ରହଃ ସଖୀ ॥ ଶ୍ଳୋକ-୪୯ ॥**

ଅର୍ଥ -

| | | | | |
|---|---|---|---|---|
| ସୁଜନେ ସାବଧାନେ ଶୁଣ | । | ଗୀତଗୋବିନ୍ଦ ଅର୍ଥମାନ | ।୧। |
| ଏମନ୍ତେ ରାଧିକା ସୁନ୍ଦରୀ | । | କଳହ କୃଷ୍ଣ ସଙ୍ଗେ କରି | ।୨। |
| ଆଗେ ହୋଇ ଆସି ମୃଗାକ୍ଷି | । | ଏକାନ୍ତ ସ୍ଥାନେ ବସିଅଛି | ।୩। |
| କେମନ୍ତ ହୋଇଛି ସେ ରାଧା | । | ଅଙ୍ଗେ ତାହାର ବଡ଼ ବାଧା | ।୪। |
| ମନ୍ମଥ ମଦନକୁ କହି | । | ତା ବାଣେ କ୍ଷୀଣ ଅଛି ହୋଇ | ।୫। |
| ରତିରସରେ ହୋଇ ଭିନ୍ନ | । | ବିଷାଦ ହୋଇଛି (ସମ୍ପୂର୍ଣ୍ଣ?) ସମ୍ପନ୍ନ | ।୬। |
| ହରି ଚରିତମାନେ ତାର | । | ମନରେ ଚିନ୍ତାଉଛି ଆର | ।୭। |
| ଏମନ୍ତ ରାଧିକାକୁ ସଖୀ | । | ବୋଲୁଛି ଶୁଣ ଚନ୍ଦ୍ରମୁଖୀ | ।୮। |

(ଗୁର୍ଜରୀରାଗେଣ ଗୀୟତେ)

***ହରିରଭିସରତି ବହତି ମୃଦୁପବନେ ।***
***କିମପରମଧିକସୁଖଂ ସଖି ଭବନେ ।***
***ମାଧବେ ମା କୁରୁ ମାନିନି ମାନମୟେ ॥ ଧ୍ରୁବମ୍-୧ ॥***

ଅର୍ଥ -

| | | | |
|---|---|---|---|
| ଗୁର୍ଜରୀ ରାଗେଣ ଗୀୟତେ | । | ଅଷ୍ଟମଦଶ ଗାଥା ଅର୍ଥେ | ।୯। |
| ଭୋ ରାଧେ ମାଧବର ତହିଁ | । | ମାନ ତୁ ନ କର ଗୋ ସହି | ।୧୦। |
| ହରି ସେ ନିକୁଞ୍ଜ ବନରେ | । | ବିହରୁ ଅଛି ଏକାନ୍ତରେ | ।୧୧। |
| ସେ କୁଞ୍ଜବନର ମହିମା | । | କେ କହି ପାରିବଟି ସୀମା | ।୧୨। |
| ବହୁଛି ମଳୟ ପବନ | । | ମୋହୁଛି ଦେବଙ୍କ ଭବନ | ।୧୩। |
| ଘର ଅଧିକ ହୋଇଅଛି | । | ସେ ସ୍ଥାନଗୋଟି ଗୋ ମୃଗାକ୍ଷି | ।୧୪। |

ଗୀତ -

*ତାଳଫଳାଦପି ଗୁରୁମତିସରସମ୍ ।*
*କିମୁ ବିଫଳୀକୁରୁଷେ କୁଚକଳସମ୍ ॥୨॥*

ଅର୍ଥ -

| | | | |
|---|---|---|---|
| ତାଳ ଫଳରୁ ଗୋ ସରସ | । | ଏ ତୋର କୁଚ ଯେ କଳସ | ।୧୫। |
| ବିଫଳ କରୁଛୁ କିପାଇଁ | । | ସଫଳ କର ହରି ଠେଇଁ | ।୧୬। |

ଗୀତ -

*କତି ନ କଥିତମିଦମନୁପଦମଚିରମ୍ ।*
*ମା ପରିହର ହରିମତିଶୟରୁଚିରମ୍ ॥୩॥*

ଅର୍ଥ -

| | | | |
|---|---|---|---|
| ଭୋ ସଖି ରାଧିକେ ମୁଁ ତୋତେ | । | ପ୍ରତିପଦେ କହିବି କେତେ | ।୧୭। |
| ଅତି ସୁନ୍ଦର ଯେତି ହରି | । | ତାହାଙ୍କୁ ଛାଡ଼ ନା ସୁନ୍ଦରୀ | ।୧୮। |

ଗୀତ -

*କିମିତି ବିଷୀଦସି ରୋଦିଷି ବିକଳା ।*
*ବିହସତି ଯୁବତିସଭା ତବ ସକଳା ॥୪॥*

ଅର୍ଥ-

| | | | |
|---|---|---|---|
| ବିଷାଦ ହୋଇ କିପାଁ ସଖି | । | ରୋଦନ କରୁ ଚନ୍ଦ୍ରମୁଖି | ।୧୯। |
| ଏ ତୋର ନିକଟେ ଯୁବତି | । | ଜନମାନେ ଯେ ବେଢ଼ିଛନ୍ତି | ।୨୦। |
| ସେ ତୋର ବିକଳେ ଦେଖନ୍ତେ | । | ହସୁଣ ଅଛନ୍ତି ସମସ୍ତେ | ।୨୧। |

ଗୀତ -

*ମୃଦୁନଳିନୀଦଳଶୀଳିତଶୟନେ ।*
*ହରିମବଲୋକୟ ସଫଳୟ ନୟନେ ॥୫॥*

ଅର୍ଥ -

| | | | |
|---|---|---|---|
| ନଳିନୀ ଦଳ ଜଳ ମିଶି | । | ସଜ୍ଜା (ଶଯ୍ୟା) କରିଛି ହୃଷୀକେଶୀ | ।୨୨। |
| ଏମନ୍ତ ସଜ୍ଜାରେ ହରିକି | । | ଅବଲୋକନ କର ସଖୀ | ।୨୩। |
| ଏ ତୋର ନୟନ ଯୁଗଳ | । | ଦେଖିଣ ସଫଳ ଗୋ କର | ।୨୪। |

ଗୀତ -

*ଜନୟସି ମନସି କିମିତି ଗୁରୁଖେଦମ୍ ।*
*ଶୃଣୁ ମମ ବଚନମନୀହିତଭେଦମ୍ ॥୬॥*

ଅର୍ଥ -

| | | |
|---|---|---|
| ମନରେ କିମ୍ପା ଏତେ ଖେଦ । | ଧରିଛୁ ଛାଡ଼ ତୁ ବିଷାଦ | ।୨୫। |
| ଏବେ ମୋ ଅଭେଦ ବଚନ । | ନିଚୟେ କରି ସଖି ଘେନ | ।୨୬। |

ଗୀତ -

*ହରିରୁପଯାତୁ ବଦତୁ ବହୁ ମଧୁରମ୍ ।*
*କିମିତି କରୋଷି ହୃଦୟମତିବିଧୁରମ୍ ॥୭॥*

ଅର୍ଥ -

| | | |
|---|---|---|
| ହରି ତହିଁକି ଏବେ ଯାଅ । | ମଧୁର କଥାମାନ କହ | ।୨୭। |
| ହୃଦୟ ବିଧୁର କରିଣ । | ବିଅର୍ଥେ କରୁଛୁ ରୋଦନ | ।୨୮। |

ଭଣିତା -

*ଶ୍ରୀଜୟଦେବଭଣିତମତିଲଳିତମ୍ ।*
*ସୁଖୟତୁ ରସିକଜନଂ ହରିଚରିତମ୍ ॥୮॥*

ସ୍ନିଗ୍ଧେ ଯତ୍ପରୁଷାସି ଯତ୍ ପ୍ରଣମତି ସ୍ତବ୍ଧାସି ଯଦ୍ରାଗିଣି
ଦ୍ୱେଷସ୍ଥାସି ଯଦୁନ୍ମୁଖେ ବିମୁଖତାଂ ଯାତାସି ତସ୍ମିନ୍ ପ୍ରିୟେ ।
ତଦ୍ୟୁକ୍ତଂ ବିପରୀତକାରିଣି ତବ ଶ୍ରୀଖଣ୍ଡଚର୍ଚ୍ଚାବିଷଂ
ଶୀତାଂଶୁସ୍ତପନୋ ହିମଂ ହୁତବହଃ କ୍ରୀଡ଼ାମୁଦୋ ଯାତନାଃ ॥ ଶ୍ଳୋକ-୫୦ ॥

ଅର୍ଥ -

| | | |
|---|---|---|
| କୃଷ୍ଣ ଯେ ତୋର ପ୍ରିୟ କାନ୍ତ । | ସେ ବିପରୀତ ହୋନ୍ତେ ସନ୍ତ | ।୨୯। |
| ଚନ୍ଦନ ରସ ତୋର ଅଙ୍ଗେ । | ବିଷ ପରାଏ ତାକୁ ଲଗେ | ।୩୦। |
| ସିତାଂଶୁ ଯେ ଚନ୍ଦ୍ର କିରଣ । | ସେ ତାକୁ ଅରୁଣ ଯେସନ | ।୩୧। |
| ଶୀତଳ ଦ୍ରବ୍ୟମାନ ଯେତେ । | ମଣଇ ଅନଳ ପରତେ | ।୩୨। |
| ଏମନ୍ତ ଯାତନା ଗୋ ତୋତେ । | ଯୁକ୍ତ ଅଟଇଟି ଯଥାର୍ଥେ | ।୩୩। |

କୃଷ୍ଣର ସ୍ନିଗ୍ଧ ବଚନ । କହିଲେ କହୁ ଆନ ଆନ ।୩୪।
ଯେବେ ସେ ପ୍ରଣାମ କରଇ । ଟବଦ୍ଧ ହୋଇଥାଉ ରହି ।୩୫।
ଯଦି ସେ ଅନୁରାଗ କରେ । ତୁ ଦେଶ(ଦ୍ୱେଷ)କରୁ ତେତେବେଳେ ।୩୬।
ତାହାର ସମ୍ମୁଖ ହୁଅନ୍ତେ । ବିମୁଖ ହେଉ ତୋର ଚିତ୍ତେ ।୩୭।
ଉଲଟ ହେଲା କଥା ଯେଣୁ । ଯୁକ୍ତ ଅଟଇ ତୋତେ ତେଣୁ ।୩୮।
ରସିକ ଜନମାନଙ୍କର । ଏ ଗୀତ ହେଉ ସୁଖକର ।୩୯।
ହରି ଚରିତ ଏ ଲେଖନ । ଗୀତଗୋବିନ୍ଦ ଅର୍ଥମାନ ।୪୦।
ଅଷ୍ଟଦଶମ ଗାଥା ଶେଷ । ଧ୍ରୁବବଚନ ଏ ପ୍ରକାଶ ।୪୧।
ମୂଢ଼ ବଜରି ଦାସ ହରି । ଚରଣେ ଶରଣ ଫୁକାରି ।୪୨।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ କଳହାନ୍ତରିତାବର୍ଣ୍ଣନେ*

*ମୂଢ଼ବଜରିଦାସେନ କୃତୌ (ମନ୍ଦମୁକୁନ୍ଦୋ) ମୁଗ୍ଧମୁକୁନ୍ଦୋ ନାମ*

*ନବମଃ ସର୍ଗଃ ।*

# ଏକବିଂଶ ଅଧ୍ୟାୟ

ଅତ୍ରାନ୍ତରେ ମସୃଣରୋଷବଶାମସୀମ-
ନିଶ୍ୱାସନିଃସହମୁଖୀଂ ସୁମୁଖୀମୁପେତ୍ୟ ।
ସବ୍ରୀଡମୀକ୍ଷିତସଖୀବଦନାଂ ପ୍ରଦୋଷେ
ସାନନ୍ଦଗଦ୍‌ଗଦପଦଂ ହରିରିତ୍ୟୁବାଚ ॥ ଶ୍ଲୋକ-୫୧ ॥

ଅର୍ଥ -

| | | |
|---|---|---|
| ଶୁଣ ସୁବୁଦ୍ଧି ସାଧୁଜନ । | ଯେ ଅର୍ଥଗୋବିନ୍ଦ ଲେଖନ | ।୧। |
| ଶ୍ରୀ ଗୀତଗୋବିନ୍ଦର ଅର୍ଥ । | ସଫଳ କର ଶ୍ରୁତିପଥ | ।୨। |
| ଏଥି ଉତ୍ତାରୁ ହରି ଯେ ସେ । | ସନ୍ଧ୍ୟାକାଳରେ ଦିନ ଶେଷେ | ।୩। |
| ରାଧିକା ସନ୍ନିଧିକୁ ଯାଇଁ । | ସାନନ୍ଦେ ଗଦଗଦ ହୋଇ | ।୪। |
| ବହୁତ ରୋଷଯୁକ୍ତ ହୋଇ । | ବସି ଅଛଇ ସେହୁ ରାଇ | ।୫। |
| ନିଶ୍ୱାସ ଖରତର ତାର । | ବହୁଛି ଅନଳ ପ୍ରକାର | ।୬। |
| ବ୍ରୀଡ଼ା ଯେ ଲଜ୍ଜା ତେଣେ କରି । | ଯୁକ୍ତ ହୋଇଛି ସେ ସୁନ୍ଦରୀ | ।୭। |
| ସଖୀମାନଙ୍କୁ ଚାହୁଁଅଛି । | ଚାଟୁ କରନ୍ତି ନନ୍ଦବଛି | ।୮। |

[ରାଗ ଲକ୍ଷଣମ୍ - କୁନ୍ଦେନ୍ଦୁକାନ୍ତା ତନୁଦେବବଲ୍ଲୀ ଶୁକ୍ଳାମ୍ବରା ସା ପ୍ରତୀତା ସୁବେଶା ।
ଭର୍ତ୍ତୁଃ ସୁରନ୍ତୀ ଶୟନେ ବିଦଗ୍ଧା ଆଖ୍ୟାୟମାନା ନିଶି ଦେଶିକେୟମ୍]

(ଦେଶୀରାଗେଣ ଗୀୟତେ)

*ବଦସି ଯଦି କିଂଚିଦପି ଦନ୍ତରୁଚିକୌମୁଦୀ*
*ହରତି ଦରତିମିରମତିଘୋରମ୍ ।*
*ସ୍ଫୁରଦଧରସୀଧବେ ତବ ବଦନଚନ୍ଦ୍ରମା*
*ରୋଚୟତି ଲୋଚନଚକୋରମ୍ ।*

*ପ୍ରିୟେ ଚାରୁଶୀଳେ*
*ମୁଞ୍ଚ ମୟି ମାନମନିଦାନମ୍ ।*
*ସପଦି ମଦନାନଳୋ ଦହତି ମମ ମାନସଂ*
*ଦେହି ମୁଖକମଳମଧୁପାନମ୍ ॥ ଧ୍ରୁବମ୍-୧ ॥*

| | | |
|---|---|---|
| ଦେଶୀ ବରାଡ଼ି ରାଗେ ଗୀତେ । | ଉନବିଂଶତି ଗାଥା ଅର୍ଥେ | ।୯। |
| ବୋଲନ୍ତି ପ୍ରଭୁ ନାରାୟଣ । | ଭୋ ପ୍ରିୟେ ରାଧିକେ ତୁ ଶୁଣ | ।୧୦। |
| କପଟ ନାହିଁ ମୋର ତୋତେ । | ତୁ କିମ୍ପା ମାନ କରୁ ମୋତେ | ।୧୧। |
| ନିଦାନ ଯେବେ କଲୁ ମାନ । | ଛାଡ଼ ତୁ ଘେନ ମୋ ବଚନ | ।୧୨। |
| ମାନ ତୋ ନ ଛାଡ଼ିବୁ ଯେବେ । | ତକ୍ଷଣେ କାମ ଅଗ୍ନି ତେବେ | ।୧୩। |
| ମନ ମୋ ଦହୁଁଛି ଦଇବ । | ଦେଖିଲେ ଏ ତୋର ଅଭାବ | ।୧୪। |
| ମୁଖ କମଳ ମଧୁପାନ । | ଦେଇ ମୋ ରଖ ତୁ ଜୀବନ | ।୧୫। |
| ଭୋ ସଖି ରାଧିକେ ତୁ ମୋତେ । | ବଚନ କହ ଗୋ ଇଷିତେ | ।୧୬। |
| ଏ ତୋର ଦନ୍ତକାନ୍ତିମାନ । | ହୋଇଲା ଚନ୍ଦ୍ରମା ଯେସନ | ।୧୭। |
| ତୋତେ ମୋ ହୋଇଛି ଯେ ଭୟେ । | ସେ ହେଲା ଅନ୍ଧାର ପରାୟେ | ।୧୮। |
| ସେ ତାହା ନାଶ କରିଂ ହେଳେ । | ଦନ୍ତ ଚନ୍ଦ୍ରମା ପ୍ରକାଶରେ | ।୧୯। |
| ଅମିଅ ରସ ତୋ ଅଧର । | ବେନି ଲୋଚନ ମୋ ଚକୋର | ।୨୦। |
| ସେ ତାହା କରନ୍ତୁ ଗୋ ପାନ । | ଭୋ ପ୍ରିୟେ କହ ତୁ ବଚନ | ।୨୧। |

ଗୀତ -

*ସତ୍ୟମେବାସି ଯଦି ସୁଦତି ମୟି କୋପିନୀ*
*ଦେହି ଖରନୟନଶରଘାତମ୍ ।*
*ଘଟୟ ଭୁଜବନ୍ଧନଂ ଜନୟ ରଦଖଣ୍ଡନଂ*
*ଯେନ ବା ଭବତି ସୁଖଜାତମ୍ ॥୨॥*

ଅର୍ଥ -

| | | |
|---|---|---|
| ଭୋ ସଖି ରାଧିକେ ତୁ ମୋତେ । | କୋପ କରିବୁ ଯେବେ ସତେ | ।୨୨। |
| ନୟନ ତୀକ୍ଷଣଶର ତୋର । | କଟାକ୍ଷ କରି ମୋତେ ମାର | ।୨୩। |

ଭୁଜରେ ଜୋରେ ଆଶ୍ଳେଷ କରି । ବାନ୍ଧି ପକାଅ ଗୋ ସୁନ୍ଦରି ।୨୪।
ମଦନ ତାପେ ଦନ୍ତଘାତ । ମୋର ଉପରେ କର ପାତ ।୨୫।
ଯେମନ୍ତେ ସୁଖ ତୋତେ ହୋଇଁ । ତେମନ୍ତ କ୍ଷାତ (କ୍ଷତ) କର ସହି ।୨୬।

ଗୀତ -

*ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନଂ*
*ତ୍ୱମସି ମମ ଭବଜଳଧିରତ୍ନମ୍ ।*
*ଭବତୁ ଭବତୀହ ମୟି ସତତମନୁରୋଧିନୀ*
*ତତ୍ର ମମ ହୃଦୟମତିଯତ୍ନମ୍ ।।୩।।*

ଅର୍ଥ -

ଭୋ ପ୍ରିୟେ ହୃଦୟକୁ ମୋର । ତୁହି ସେ ଭୂଷଣ ନିକର ।୨୭।
ତୋ ପରେ ଅଳଙ୍କାର ନାହିଁ । ତୋ ଥିଲେ ମୁଁ ଭଲ ଦିଶଇଁ ।୨୮।
ତୁ ମୋର ଜୀବନ ଗୋ ଅଟୁ । ମନ ବିଶ୍ରାମ ସ୍ଥାନ ଘଟୁ ।୨୯।
ପଞ୍ଚଭୂତ ଆତ୍ମାରେ ତୁହି । ହୃଦ ପଙ୍କଜେ ଅଛୁ ରହି ।୩୦।
ଭବ ସାଗର ତରିବାକୁ । ତୁ ରତ୍ନଭେଳା ଅଟୁ ମୁକୁ ।୩୧।
ଅନବରତ କୋପଚିତ୍ତେ । ତୁ ପ୍ରିୟେ କରନ୍ତେ ଗୋ ମୋତେ ।୩୨।
ନାନା ପ୍ରକାରେ ହୃଦ ମୋର । ହୋଇଛି ଯତ୍ନ ତୋହ ଠାର ।୩୩।

ଗୀତ -

*ନୀଳନଳିନାଭମପି ତନ୍ୱି ତବ ଲୋଚନଂ*
*ଧାରୟତି କୋକନଦରୂପମ୍ ।*
*କୁସୁମଶରବାଣଭାବେନ ଯଦି ରଞ୍ଜୟସି*
*କୃଷ୍ଣମିଦମେତଦନୁରୂପମ୍ ।।୪।।*

ଅର୍ଥ -

ନୀଳ ଉତ୍ପଳ ପ୍ରିୟେ ତୋର । ଲୋଚନ ଯୁଗଳ ସୁନ୍ଦର ।୩୪।
ଏବେ ଏ କୋପେ କରି ସହେ । ଦିଶଇ ରକ୍ତକଇଁ ପ୍ରାୟେ ।୩୫।
କାମଦେବର ବାଣମାନେ । ଯେବେ ରଞ୍ଜିବୁ ସେ ଲୋଚନେ ।୩୬।
ତେବେ ସେ ଅନୁରୂପ କରି । ମୋତେ ପାରନ୍ତି ଗୋ ସୁନ୍ଦରି ।୩୭।

ଗୀତ -

ସ୍ଫୁରତୁ କୁଚକୁମ୍ଭୟୋରୁପରି ମଣିମଞ୍ଜରୀ
ରଞ୍ଜୟତୁ ତବ ହୃଦୟଦେଶମ୍ ।
ରସତୁ ରସନାପି ତବ ଘନଜଘନମଣ୍ଡଳେ
ଘୋଷୟତୁ ମନ୍ମଥନିଦେଶମ୍ ॥୫॥

ଅର୍ଥ -

ମଣିମଞ୍ଜୀର ଯେଟି ହାର । ରଞ୍ଜୁ ତୁ ହୃଦୟ ଉପର ।୩୮।
ଏ କୁଚ କଳଶ ଗୋ ଦୁଇ । ସୁନ୍ଦର ଦିଶୁ ପ୍ରାଣସହି ।୩୯।
ଘନ ଜଘନ ମଣ୍ଡଳରେ । ରସନା ଖଞ୍ଜି ଧାଡିକାରେ ।୪୦।
ମନ୍ମଥ ମଦନକୁ କହି । ତା ଆଜ୍ଞା ଘୋଷୁ ଏ ଗୋ ସହି ।୪୧।
ଶବଦ କରୁ ଏ ବିସ୍ତାରି । ବିଳମ୍ବ ନ କର ସୁନ୍ଦରୀ ।୪୨।

ଗୀତ -

ସ୍ଥଳକମଳଗଞ୍ଜନଂ ମମ ହୃଦୟରଞ୍ଜନଂ
ଜନିତରତିରଙ୍ଗପରଭାଗମ୍ ।
ଭଣ ମସୃଣବାଣି କରବାଣି ଚରଣଦ୍ୱୟଂ
ସରସଲସଦଲକ୍ତକରାଗମ୍ ॥୬॥

ଅର୍ଥ -

ଭୋ ପ୍ରିୟେ ରାଧିକେ ମୋହର । ଚରଣ ଯୁଗରେ ତୋହର ।୪୩।
ଅଳତା ରଞ୍ଜିବି ମୁଁ ସଖି । ଆଜ୍ଞା ତୁ ଦିଅ ଚନ୍ଦ୍ରମୁଖି ।୪୪।
ଚରଣ ଯୁଗଳ ତୋହର । କେହ୍ନେ ଅଟଇ ପଟାନ୍ତର ।୪୫।
ସ୍ଥଳ ପଦ୍ମକୁ ହେଳେ ଗଞ୍ଜେ । ମମ ହୃଦୟ ମଧ୍ୟେ ରଞ୍ଜେ ।୪୬।
ରତି କାଳରେ ଶୋଭାକର । ଅଟଇ ଏ ତୋର ପସର ।୪୭।

ଗୀତ -

ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦପଲ୍ଲବମୁଦାରମ୍ ।
ଜ୍ୱଳତି ମୟି ଦାରୁଣୋ ମଦନକଦନାନଳୋ
ହରତୁ ତଦୁପାହିତବିକାରମ୍ ॥୭॥

ଅର୍ଥ -

ଭୋ ସଖି ରାଧିକେ ତୋହର । ପଦ ପଲ୍ଲବ ଯେ ସୁନ୍ଦର ।୪୮।
ସେ ପାଦ ମୋର ଶିର ପରେ । ଆଣି ତୁ ଦେଉ କିନା ବାରେ ।୪୯।
ମୋ ତହିଁ କାମ ଅଗ୍ନି ଯେ ସେ । ଦାରୁଣ ଦହୁଛି ବିଶେଷେ ।୫୦।
ତାହା ତୁ ହରି ତୋର ପାଦ । ଆଣି ମୋ ଶିରପରେ ଲଦ ।୫୧।
ପାଦ ପଲ୍ଲବ ତୋର ସହି । କେମନ୍ତ ପ୍ରାୟେ ଗୋ ଅଟଇ ।୫୨।
ସ୍ମର ଯେ ମନମଥ ବୀର । ସେହି ସେ ହୋଇଲା ଗରଳ ।୫୩।
ତା ହାତ ଖଣ୍ଡନ୍ତା ଅଟଇ । ମୋ ଶିରେ ମଣ୍ଡନ୍ତା ଘଟଇ ।୫୪।

ଭଣିତା -

*ଇତି ଚଟୁଳଚାଟୁପଟୁଚାରୁ ମୁରବୈରିଣୋ*
*ରାଧିକାମଧି ବଚନଜାତମ୍ ।*
*ଜୟତି ପଦ୍ମାବତୀରମଣଜୟଦେବକବି -*
*ଭାରତୀଭଣିତମତିଶାତମ୍ ॥୮॥*

ମୁଗ୍ଧେ ବିଧେହି ମୟି ନିର୍ଦ୍ଦୟଦନ୍ତଦଂଶ-
ଦୋର୍ବଲ୍ଲିବନ୍ଧନିବିଡ଼ସ୍ତନପୀଡ଼ନାନି ।
ଚଣ୍ଡି ତ୍ୱମେବ ମୁଦମଞ୍ଚ ନ ପଞ୍ଚବାଣ -
ଚାଣ୍ଡାଳକାଣ୍ଡଦଳନାଦସବଃ ପ୍ରୟାନ୍ତୁ ॥ ଶ୍ଳୋକ-୫୨ ॥

ଅର୍ଥ -

ଭୋ ସଖି ରାଧିକେ ତୁ ମୋତେ । କୋପ ନ କର ଆଉ ଚିତ୍ତେ ।୫୫।
ଯେବେ ଗୋ କୋପ ଅଛୁ କରି । ବିଚାରି ଦଣ୍ଡ ଦିଅ ବାଳୀ ।୫୬।
ନିର୍ଦ୍ଦୟ କରି ଦନ୍ତକ୍ଷତ । ମୋର ଉପରେ କର ଘାତ ।୫୭।
ବାହୁ ଯୁଗରେ ଗାଢ଼ କରି । ସ୍ତନ ଉପରେ ଭିଡ଼ି ଧରି ।୫୮।
ଯେମନ୍ତେ ପୀଡ଼ା ମୋତେ ହୋଇ । ତେମନ୍ତ ଜାତ କର ସହି ।୫୯।
ପଞ୍ଚବାଣ ଯେ କାମଦେବ । ସେ ବଡ଼ ନିର୍ଦ୍ଦୟ ସ୍ୱଭାବ ।୬୦।

ବଡ଼ ଚାଣ୍ଡାଳ ଯେ ତା ବାଣ । ଦହି ହୁଅନ୍ତା ଯେ ମୋ ପ୍ରାଣ ।୬୧।
ସେ ପ୍ରାଣ ନ ଯାଉଣୁ ମୋର । ତୁ ପ୍ରିୟେ ଦୟା ମୋତେ କର ।୬୨।

ପରିହର କୃତାତଙ୍କେ ଶଙ୍କାଂ ତ୍ୱୟା ସତତଂ ଘନ -
ସ୍ତନଜଘନସ୍ତାକ୍ରାନ୍ତେ ସ୍ୱାନ୍ତେ ପରାନବକାଶିନି ।
ବିଶତି ବିତନୋରନ୍ୟୋ ଧନ୍ୟୋ ନ କୋଽପି ମମାନ୍ତରଂ
ସ୍ତନଭରପରୀରମ୍ଭାରମ୍ଭେ ବିଧେହି ବିଧେୟତାମ୍ ॥ ଶ୍ଳୋକ-୫୩ ॥

ଅର୍ଥ -

ଭୋ ସଖି ରାଧିକେ ତୋହର । ମନରୁ ଶଙ୍କା ଦୂର କର ।୬୩।
ମୋହର ଅନ୍ୟ ସ୍ତିରୀ ତହିଁ । ହେ ସଖି ଅବକାଶ ନାହିଁ ।୬୪।
ତୋର ଜଘନ ସ୍ତନେ କରି । ଆକ୍ରାନ୍ତ ହୋନ୍ତେ ଗୋ ସୁନ୍ଦରୀ ।୬୫।
ଧନ୍ୟ କେ ଧନ୍ୟା ସ୍ତିରୀ ମୋର । ସନ୍ନିଧେ ପ୍ରବେଶିବ ଆର ।୬୬।
ଏ କଥା ମିଥ୍ୟାଟି ଗୋ ସଖି(ହିଂ?) । ମାନ ତୁ ଛାଡ଼ି ଚନ୍ଦ୍ରମୁଖି ।୬୭।
ଏବେ ତୋହର ସ୍ତନଭାରେ । ପରିରମ୍ଭଟି ବେଭାରେ ।୬୮।
ମୋ ସଙ୍ଗେ ଆରମ୍ଭ ତୁ କର । ତୋ ବିନୁ ନାହିଁ ମୋର ଆର ।୬୯।

ବ୍ୟଥୟତି ବୃଥା ମୌନଂ ତନ୍ୱି ପ୍ରପଞ୍ଚୟ ପଞ୍ଚମଂ
ତରୁଣମଧୁରାଳାପୈସ୍ତାପଂ ବିନୋଦୟ ଦୃଷ୍ଟିଭିଃ ।
ସୁମୁଖି ବିମୁଖୀଭାବଂ ତାବଦ୍ୱିମୁଞ୍ଚ ନ ମୁଞ୍ଚ ମାଂ
ସ୍ୱୟମତିଶୟସ୍ନିଗ୍ଧେ ମୁଗ୍ଧେ ପ୍ରିୟୋଽୟମୁପସ୍ଥିତଃ ॥ ଶ୍ଳୋକ-୫୪ ॥

ଅର୍ଥ -

ଭୋ ସଖି ରାଧିକେ ତୋହର । ମଉନଭାବ ଦୂରକର ।୭୦।
ସମ୍ମୁଖ ହୋଇବାରେ ଚିତ୍ତେ । ଦୃଷ୍ଟିରେ ଦେଖ ପ୍ରିୟେ ମୋତେ ।୭୧।
ମୋ ମୁଖ ଚାହିଁ ମୃଦୁ କରି । କହ ତୁ ବଚନ ମାଧୁରୀ ।୭୨।
ମଉନଭାବ ତୋର ଦେଖି । ସେ ମୋତେ ବ୍ୟଥା ଗୋ ଅଧିକି ।୭୩।
ଏବେ ମଉନଭାବ ଛାଡ଼ । କିଂପାଇଁ କରୁଅଛୁ ଗୃଢ଼ ।୭୪।

ବନ୍ଧୁକଦ୍ୟୁତିବାନ୍ଧବୋଽୟମଧରଃ ସ୍ନିଗ୍ଧୋ ମଧୂକଛବି-
ର୍ଗଣ୍ଡେ ଚଣ୍ଡି ଚକାସ୍ତି ନୀଳନଳିନଶ୍ରୀମୋଚନଂ ଲୋଚନମ୍ ।
ନାସାଭ୍ୟେତି ତିଳପ୍ରସୂନପଦବୀଂ କୁନ୍ଦାଭଦନ୍ତି ପ୍ରିୟେ
ପ୍ରାୟସ୍ତ୍ୱନ୍ମୁଖସେବୟା ବିଜୟତେ ବିଶ୍ୱଂ ସ ପୁଷ୍ପାୟୁଧଃ ॥ ଶ୍ଳୋକ-୫୫ ॥

ଅର୍ଥ -

| | | |
|---|---|---|
| ଭୋ ସଖି ତୋହର ସେବାୟେ । | ପୁଷ୍ପାୟୁଧ ଯେ ନଙ୍ଗରାୟେ | ।୭୫। |
| ବିଶ୍ୱ ଯେ ସଂସାରକୁ କହି । | ଏଣେ ସେ ଜିଣିଲା ଗୋ ସହି | ।୭୬। |
| ଏମନ୍ତ ମଣି ହୋଉଅଛି । | କହଇ ଶୁଣ ଗୋ ମୃଗାକ୍ଷି | ।୭୭। |
| ଏ ତୋର ମୁଖ ଯେ କେମନ୍ତ । | ପ୍ରିୟେକ ଦିଶଇ ସଂଜାତ | ।୭୮। |
| ଅଧର ଶୋଭା ତୋର ଦିଶେ । | ବନ୍ଧୁଲି ଫୁଲ ପ୍ରାୟେ କି ସେ | ।୭୯। |
| ଏ ତୋର ବେନି ଯେ ଶ୍ରବଣ । | ଦିଶଇ ସ୍ନିଗିଧ ଚିକ୍‌କଣ | ।୮୦। |
| ଏମନ୍ତ ମହୁଲ ଯେ ଫୁଲ । | ତା ତେଜ ପ୍ରାଏ ଦିଶେ ତୁଲ | ।୮୧। |
| ଲୋଚନ ଦୁଇ ତୋର ମଣ୍ଡେ । | ନୀଳ ଉତ୍ପଳ ଶିରୀ ଖଣ୍ଡେ | ।୮୨। |
| ଦନ୍ତ କୁନ୍ଦପୁଷ୍ପର ପ୍ରାୟେ । | ଦଶନପନ୍ତି ଶୋଭା ପାଏ | ।୮୩। |
| ଏଣୁ ତୋ ମୁଖ ସେବା କରି । | ସଂସାର ଜିଣେ ହରଥରି | ।୮୪। |

ଦୃଶୌ ତବ ମଦାଳସେ ବଦନମିନ୍ଦୁସନ୍ଦୀପନଂ
ଗତିର୍ଜ୍ଜନମନୋରମା ବିଜିତରମ୍ଭମୁରୁଦ୍ୱୟମ୍ ।
ରତିସ୍ତବ କଳାବତୀ ରୁଚିରଚିତ୍ରଲେଖେ ଭ୍ରୁବା -
ବହୋ ବିବୁଧଯୌବତଂ ବହସି ତନ୍ୱି ! ପୃଥ୍ୱୀଗତା ॥ ଶ୍ଳୋକ-୫୬ ॥

ଅର୍ଥ -

| | | |
|---|---|---|
| ଭୋ ରାଧେ ପୃଥିବ(ବୀ)ରେ ଥାଇଁ । | ଦେବସ୍ତ୍ରୀ ଯୌବନ ତୁ ବହି | ।୮୫। |
| କେମନ୍ତ ହୋନ୍ତେ ଦେବସ୍ତିରୀ । | ପ୍ରାଏ ତୁ ଦିଶୁଛୁ ସୁନ୍ଦରୀ | ।୮୬। |
| ଏ ତୋର ଚକ୍ଷୁ ଦୁଇ ଯେ ସେ । | ମଦେ କରି ଅଳସ ଦିଶେ | ।୮୭। |
| ତେଣୁ ତୁ ମଦାଳସୀ ପରି । | ପ୍ରାଏକ ଦିଶୁଅଛୁ ବାରି | ।୮୮। |
| ବଦନ ମୁଖକୁ ଯେ କହି । | ସେ ଇନ୍ଦୁ ପ୍ରାଏ ଅଛି ଶୋହି | ।୮୯। |

ଏଣୁ ଇନ୍ଦୁ ନାମ ଅପ୍‌ସରୀ । ପ୍ରାଏ ତୁ ଦିଶୁଅଛୁ ବାରି ।୯୦।
ଗତି ଯେ ଗମନ ଅଟଇ । ସେ ମନୋରମ ତୋ ଘଟଇ ।୯୧।
ଏଣୁ ମନୋରମା ଅପ୍‌ସରୀ । ପ୍ରାଏ ତୁ ଦିଶୁଅଛୁ ବାରି ।୯୨।
ଜଘନ ବେନି ତୋର ଦିଶେ । କଦଳୀ ବୃକ୍ଷ ପ୍ରାଏ କି ସେ ।୯୩।
ଏଣୁ ତୁ ଶୋଭାବନ୍ତ ଅଟୁ । ରମ୍ଭା ଅପ୍‌ସରା ପ୍ରାଏ ଘଟୁ ।୯୪।
ଗତି ତୋହର ଗୋ ଅଟଇ । ସେ କଳାବତୀ ଯେ ଘଟଇ ।୯୫।
ଏଣୁ କଳାବତୀ ଅପ୍‌ସରୀ । ପ୍ରାଏ ତୁ ଦିଶୁଅଛୁ ବାରି ।୯୬।
ଚିତ୍ର ଲେଖିଲା ପ୍ରାଏ ତୋର । ଭ୍ରୂଲତା ଦୁଇ ଗୋ ସୁନ୍ଦର ।୯୭।
ଭୋ ପ୍ରିୟେ ଏଣୁ ତୁ ଗୋ ଅଟୁ । ଚିତ୍ରଲେଖା ଅପ୍‌ସରୀ ଅଟୁ ।୯୮।
ଏମନ୍ତ କରି ଦେବସ୍ତିରୀ । ଯୌବନ ବହିଛୁ ସୁନ୍ଦରୀ ।୯୯।
ମର୍ତ୍ତ୍ୟ ଯୁବତୀ କାହିଁ ସରି । ତୋହ ସଙ୍ଗତେ ପଟାନ୍ତରୀ ।୧୦୦।
ଏମନ୍ତ ପ୍ରକାରେ ମୁରାରି । ରାଧିକା ଆଗେ ଚାଟୁ କରି ।୧୦୧।
ରାଧିକା କୁଞ୍ଜେ ଅଧିଗତ । ବଚନେ କରି ଏ ଭଣିତ ।୧୦୨।
ଊନବିଂଶତି ଗାଥା ଶେଷ । ଧ୍ରୁବ ବଚନ ଏ ପ୍ରକାଶ ।୧୦୩।
ସୁଜନେ ଏ ଗୀତ ତୁମ୍ଭର । ଜୟଯୁକ୍ତ ହୋଉ ସୁମର ।୧୦୪।
ମୃତ୍ୟୁ ବଜରି ଦାସ କହେ । ଉଦ୍ଧର ପ୍ରଭୁ ଦେବରାଏ ।୧୦୫।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ମାନିନୀବର୍ଣ୍ଣନେ*
*ମୃତ୍ୟୁବଜରିଦାସେନ କୃତୌ ଚତୁରଚତୁର୍ଭୁଜୋ ନାମ*
*ଦଶମସର୍ଗଃ ।*

# ଦ୍ୱାବିଂଶ ଅଧ୍ୟାୟ

ସୁଚିରମନୁନୟେନ ପ୍ରୀଣୟିତ୍ୱା ମୃଗାକ୍ଷୀଂ
ଗତବତି କୃତବେଶେ କେଶବେ କୁଞ୍ଜଶଯ୍ୟାମ୍ ।
ରଚିତରୁଚିରଭୂଷାଂ ଦୃଷ୍ଟିମୋଷେ ପ୍ରଦୋଷେ
ସ୍ଫୁରତି ନିରବସାଦାଂ କାପି ରାଧାଂ ଜଗାଦ ॥ ଶ୍ଳୋକ-୫୭ ॥

ଅର୍ଥ -

ଶୁଣ ସୁଜନ ଜନମାନ । ଯେ ଅର୍ଥଗୋବିନ୍ଦ ଲେଖନ ।୧।
ରାଧାକୁ ସଖୀ କହେ ତାର । ପ୍ରଦୋଷ କାଳରେ ଉତ୍ତର ।୨।
ପ୍ରଦୋଷ କାଳ ସେ କେମନ୍ତ । ଅଟଇ ଶୁଣ ତଥି ଅର୍ଥ ।୩।
ଏକକୁ ଆରକ ନ ଦିଶେ । ଅନ୍ଧାର ହୋଇଛି ବିଶେଷେ ।୪।
ଅନେକ ବିନୟ ସେ କରି । କହଇ ବଚନ ବିରୋଳି ।୫।
ଭୋ ରାଧେ କୁରଙ୍ଗନୟନୀ । ଘେନ ଗୋ ଏ ମୋର ଦୟିନୀ ।୬।
କେଶବ କୁଞ୍ଜଶଯ୍ୟା ପରେ । ପ୍ରବେଶ ହୋଇଲା ନିକରେ ।୭।
ତୋର ଯିବାକୁ ବାଟ ଚାହିଁ । ବସିଛି ନାନା ବେଶ ହୋଇ ।୮।

(ବସନ୍ତରାଗେଣ ଗୀୟତେ)

*ବିରଚିତଚାଟୁବଚନରଚନଂ ଚରଣେ ରଚିତପ୍ରଣିପାତମ୍ ।*
*ସମ୍ପ୍ରତି ମଞ୍ଜୁଳବଞ୍ଜୁଳସୀମନି କେଳିଶୟନମନୁଯାତମ୍ ।*
*ମୁଗ୍ଧେ ମଧୁମଥନମନୁଗତମନୁସର ରାଧିକେ ॥ ଧ୍ରୁବମ୍-୧ ॥*

ଅର୍ଥ -

ବସନ୍ତ ରାଗେଣ ଗୀୟତେ । ଦ୍ୱାବିଂଶ ଗାଥାର ଏ ଅର୍ଥେ ।୯।
ଭୋ ମୁଗ୍ଧେ ରାଧିକେ ତୁ ଶୁଣ । ସେବ ତୁ ଗୋବିନ୍ଦ ଚରଣ ।୧୦।
ମଧୁମଥନ ପ୍ରିୟ ତୋର । ତାହାଙ୍କ ଠାକୁ ଅନୁସର ।୧୧।
କେମନ୍ତ ହୋଇଛି ସେ ହରି । କହଇଁ ଶୁଣ ଗୋ ବିସ୍ତାରି ।୧୨।

ତୋର ଚରଣେ ଅନୁଗତ । ହୋଇଛି ନିରତେ ତା ଚିତ୍ତ ।୧୩।
ଚାଟୁ ବଚନମାନ କେତେ । କହିଲା ନାହିଁ ତୋ ଅଗ୍ରତେ ।୧୪।
ବିକଳେ ତୋର ପାଦତଳ । ପ୍ରଣାମ କଲା ନନ୍ଦବାଳ ।୧୫।
ଏବେ ହେ ନ କର ନିରାଶ । ବହନ ଚାଲ ହରି ପାଶ ।୧୬।
ଅତି ସୁନ୍ଦର କୁଞ୍ଜବନେ । ଅଶୋକ ବୃକ୍ଷ ସନ୍ନିଧାନେ ।୧୭।
କ୍ରୀଡ଼ା କରିବା ଅର୍ଥେ ହରି । ଶୟନ କରିଛି ବିଚାରି ।୧୮।

ଗୀତ -

*ଘନଜଘନସ୍ତନଭାରଭରେ ଦରମନ୍ଥରଚରଣବିହାରମ୍ ।*
*ମୁଖରିତମଣିମଞ୍ଜୀରମୁପୈହି ବିଧେହି ମରାଳନିକାରମ୍ ॥୨॥*

ଅର୍ଥ -

ଘନ ନିବିଡ଼ ଏବେ ଭୂତ । ଜଘନ ବେନି ତୋ ଶୋଭିତ ।୧୯।
ବିପୁଳ ସ୍ତନଯୁଗ ଆର । ସ୍ୱଭାବେ ହୋଇଅଛି ଭାର ।୨୦।
ମଧ ଦେଖିଣ ଖିନ୍ନ ତୋର । ଭୟ ହୋଉଛି ହୃଦେ ମୋର ।୨୧।
ଏ ଘେନି ସ୍ଥିର ସ୍ଥିର ହୋଇ । ଚାଲି ତୁ ଯାଉ ଆଗେ ସହି ।୨୨।
ମଣି ମାଣିକ୍ୟ ଯୁକ୍ତ ହୋଇ । ପଦ୍ମରେ ନେପୁର ଶୋହଇ ।୨୩।
ଏହା ତୁ ଚରଣରୁ କାଢ଼ । ଶବଦ କରୁଅଛି ଗାଢ଼ ।୨୪।
ଭୋ ରାଧେ ମଧୁରିପୁ ପାଶେ । ବହନ ମିଳ ତୁ ହରଷେ ।୨୫।

ଗୀତ -

*ଶୃଣୁ ରମଣୀୟତରଂ ତରୁଣୀଜନମୋହନମଧୁରିପୁରାବମ୍ ।*
*କୁସୁମଶରାସନଶାସନବନ୍ଦିନି ପିକନିକରେ ଭଜ ଭାବମ୍ ॥୩॥*

ଅର୍ଥ -

ରମଣୀତର ଯେ ବଚନ । ତାହାଙ୍କ ଶ୍ରୀମୁଖରୁ ଶୁଣ ।୨୬।
ବଚନ କେମନ୍ତ ଅଟଇ । ତରୁଣୀ ଜନେ ମୋହ ଯାଇ ।୨୭।
ଭୋ ସଖି ଏ କୁଞ୍ଜ କାନନ । ମଦନ ରାଏର ସମାନ ।୨୮।
କୋକିଳ ଭୃଙ୍ଗ ଆଦି ତାର । ସର୍ବେ ଅଟନ୍ତି ପରିଚାର ।୨୯।
ଆଜ୍ଞା ପ୍ରମାଣେ ଧ୍ୱନି କରେ । ବିରହୀ ଦଳିବା ଅର୍ଥରେ ।୩୦।

ଗୀତ -

*ଅନିଳତରଳକିଶଳୟନିକରେଣ କରେଣ ଲତାନିକୁରମ୍ବମ୍ ।*
*ପ୍ରେରଣମିବ କରଭୋରୁ କରୋତି ଗତିଂ ପ୍ରତି ମୁଞ୍ଚ ବିଳମ୍ବମ୍ ॥୪॥*

ଅର୍ଥ -

ବିଳମ୍ବ ନ କର ଗୋ ସଖି । ଚାଲ ତୁ ଶ୍ରୀକୃଷ୍ଣ ଠହିଁକି ।୩୧।
ଭୋ ରାଧେ ଲତାମାନେ ଅତି । ନବ କୋମଳେ ଶୋଭାପାନ୍ତି ।୩୨।
ପବନ ଚଳିବାଙ୍କେ କରି । ସେହି ସେ ହସ୍ତ ତାହାଙ୍କରି ।୩୩।
କୃଷ୍ଣ ଠହିଁକି ଯିବା ପାଇଁ । ଆସ ଗୋ ବୋଲୁଛନ୍ତି ଚାହିଁ ।୩୪।
ପୁଷ୍ପ ପରାଗମାନେ ଉଡ଼ି । ପବନେ ଯାନ୍ତି ଆଗ ବଢ଼ି ।୩୫।
ଆସ ଗୋ ବୋଲି ଡାକୁଛନ୍ତି । କମ୍ପଇ ନେବର୍ତ୍ତି ବୋଲନ୍ତି ।୩୬।

ଗୀତ -

*ସ୍ଫୁରିତମନଙ୍ଗତରଙ୍ଗବଶାଦିବ ସୂଚିତହରିପରିରମ୍ଭମ୍ ।*
*ପୃଚ୍ଛ ମନୋହରହାରବିମଳଜଳଧାରମମୁଂ କୁଚକୁମ୍ଭମ୍ ॥୫॥*

ଅର୍ଥ -

ସ୍ଫୁରୁଛି ଅନଙ୍ଗ ବିକାର । କୁଚ କଳଶ ବେନି ତୋର ।୩୭।
ହରି ସଙ୍ଗତେ ପରିରମ୍ଭ । ବୋଲଇ କରିବି ଆରମ୍ଭ ।୩୮।
ସେ କୁଚ କଳଶ ଗୋ ତୋର । କେମନ୍ତ ହୋଇଅଛି ଆର ।୩୯।
ହୋଇଲେ ମୋର କଥା ମିଛ । ମୁକୁତା ହାରକୁ ଗୋ ପୁଚ୍ଛ ।୪୦।
ସେ ଅଛି କୁଚକୁମ୍ଭ ପର । ଯେସନେ ବହେ ଜଳଧାର ।୪୧।

ଗୀତ -

*ଅଧିଗତମଖିଳସଖୀଭିରିଦଂ ତବ ବପୁରପି ରତିରଣସଜ୍ଜମ୍ ।*
*ଚଣ୍ଡି ରଣିତରସନାରବଡିଣ୍ଡିମମଭିସର ସରସମଲଜ୍ଜମ୍ ॥୬॥*

ଅର୍ଥ -

ଭୋ ରାଧେ ତୋର ସନ୍ନିଧାନେ । ଅଛନ୍ତି ଯେତେ ସଖୀମାନେ ।୪୨।
ସେ ତୋର ଦେହକୁ ଗୋ ଦେଖି । ବିଚାର କଲେ ସର୍ବସଖୀ ।୪୩।

ରତିଯୁବକୁ ସଜ ହୋଇ । ଅଛି ସେ ବୋଲେ ଆଜ ଚାହିଁ ।୪୪।
ଭୋ ଚଣ୍ଡି ରାଧିକେ ତୋହର । ରସନା ଯେ ଡିଣ୍ଡିମକାର ।୪୫।
ଶବଦେ କରି ଅଭିସର । ପୂର୍ବର କଥା ଅନୁସର ।୪୬।

ଗୀତ -

*ସ୍ମରଶରସୁଭଗନଖେନ କରେଣ ସଖୀମବଲମ୍ବ୍ୟ ସଲୀଳମ୍ ।*
*ଚଳବଳୟକ୍ୱଣିତୈରବବୋଧୟ ହରିମପି ନିଜଗତିଶୀଳମ୍ ॥୭॥*

ଅର୍ଥ -

ଏ ତୋର କରବର ନଖ । ମଦନ ଶର ପ୍ରାଏ ତୀକ୍ଷ ।୪୭।
ସେ କରେ ସଖୀ କର ଧରି । ପଥରେ ଚଳ ଗୋ ସୁନ୍ଦରି ।୪୮।
ବଳୟ ଧ୍ୱନି କରି ସହି । କୃଷ୍ଣକୁ ବୋଧ କର ଯାଇଁ ।୪୯।

ଭଣିତା -

*ଶ୍ରୀଜୟଦେବଭଣିତମଧରୀକୃତହାରମୁଦାସିତବାମମ୍ ।*
*ହରିବିନିହିତମନସାମଧିତିଷ୍ଠତୁ କଣ୍ଠତଟୀମବିରାମମ୍ ॥୮॥*

ସା ମାଂ ଦ୍ରକ୍ଷ୍ୟତି ବକ୍ଷ୍ୟତି ସ୍ମରକଥାଂ ପ୍ରତ୍ୟଙ୍ଗମାଲିଙ୍ଗନୈଃ
ପ୍ରୀତିଂ ଯାସ୍ୟତି ରଂସ୍ୟତେ ସଖି ସମାଗତ୍ୟେତି ସଂଚିନ୍ତୟନ୍ ।
ସ ତ୍ୱାଂ ପଶ୍ୟତି ବେପତେ ପୁଲକୟତ୍ୟାନନ୍ଦତି ସ୍ୱିଦ୍ୟତି
ପ୍ରତ୍ୟୁଦ୍‌ଗଚ୍ଛତି ମୂର୍ଚ୍ଛତି ସ୍ଥିରତମଃପୁଞ୍ଜେ ନିକୁଞ୍ଜେ ପ୍ରିୟଃ ॥ ଶ୍ଳୋକ-୫୮ ॥

ଅର୍ଥ -

ସେ କୃଷ୍ଣ କେମନ୍ତ ହୋଇଛି । ଏକାନ୍ତ ସ୍ଥାନରେ ଶୋଇଛି ।୫୦।
ନିକୁଞ୍ଜ ଲତା ମଧ୍ୟେ ହରି । ତୋତେ ଚାହୁଁଛି ଅନୁସରି ।୫୧।
ଭୋ ସଖି ନନ୍ଦବଛି ତୋତେ । ଏମନ୍ତ ବୋଲଇ ନିରତେ ।୫୨।
ରାଧିକା ମୋତେ ଦେଖି ଆଜ । ମନରୁ ଛାଡ଼ିବ ତା ଲାଜ ।୫୩।
କାମ ଚରିତମାନେ ମୋର । ବହୁତ କହିବ ଆଗର ।୫୪।
ମୋ ସଙ୍ଗେ ନିର୍ମଳ ପୀରତି । କରିବ ଯେବେ ସେ ଯୁବତୀ ।୫୫।

ମୁଁ ତାକୁ ଆଲିଙ୍ଗନ ଦେବି । ଅଧର ପାନ କରୁଥିବି ।୫୬।
ଏମନ୍ତ ବୋଲି ନିରନ୍ତରେ । ପାଞ୍ଚୁଣ ଥାଇ ତା ହୃଦରେ ।୫୭।
ଏ ତୋର ଚିନ୍ତାକୁଳ କଥା । ତା ହୃଦେ ପାଉଥାଇଁ ବ୍ୟଥା ।୫୮।
ବିଳମ୍ବ ନ କର ଗୋ ସଖି । ଚାଲ ତୁ ଶ୍ରୀକୃଷ୍ଣ ଦେଖିବି ।୫୯।
ଯେବେ ସେ ତୋ ମୁଖ ଦେଖିବ । ଦୂରରୁ କମ୍ପମାନ ହେବ ।୬୦।
ତୁ ତାକୁ ଦେଖିଲେ ଗୋ ସଖି । ବହୁତ ହେବୁ ମନେ ସୁଖୀ ।୬୧।
ପୁଲକ ହେବ ରୋମାବଳି । ସାନନ୍ଦେ ସ୍ୱେଦକଣା ଗଳି ।୬୨।
ତା ଅଙ୍ଗେ ତୋ ଅଙ୍ଗ ଲଗାଇ । କରିବ ଆଲିଙ୍ଗନ ସହି ।୬୩।
ବହୁତ ପ୍ରୀତି ଉପୁଜିବ । କାଳେ କାଳକୁ କଥା ଥିବ ।୬୪।
କେତେହେଁ ଦୂର ତୋର ସଙ୍ଗ । ପାଛୋଟି ଆସିବ ଶ୍ରୀରଙ୍ଗ ।୬୫।
ସ୍ଥିରତମ ଯେ ଅନ୍ଧକାର । ଆଜ ହୋଇଛି ମହାଘୋର ।୬୬।
ଏମନ୍ତ ନିକୁଞ୍ଜ ବନରେ । ତୋର କାନ୍ତ ଯେ ଚିନ୍ତା କରେ ।୬୭।

**ଅକ୍ଷ୍ଣୋର୍ନିକ୍ଷିପଦଞ୍ଜନଂ ଶ୍ରବଣୟୋସ୍ତାପିଞ୍ଛଗୁଚ୍ଛାବଳିଂ**
**ମୂର୍ଦ୍ଧ୍ନି ଶ୍ୟାମସରୋଜଦାମ କୁଚୟୋଃ କସ୍ତୁରିକାପତ୍ରକମ୍ ।**
**ଧୂର୍ତ୍ତାନାମଭିସାରସତ୍ୱରହୃଦାଂ ବିଷ୍ୱଙ୍ ନିକୁଞ୍ଜେ ସଖି**
**ଧ୍ୱାନ୍ତଂ ନୀଳନିଚୋଳଚାରୁସୁଦୃଶାଂ ପ୍ରତ୍ୟଙ୍ଗମାଲିଙ୍ଗତି** ॥ ଶ୍ଲୋକ-୫୯ ॥

ଅର୍ଥ -

ଭୋ ସଖି ରାଧିକେ ମୋହର । ଧ୍ୱାନ୍ତାନ୍ତ ଯେତି ଅନ୍ଧକାର ।୬୮।
ଏମନ୍ତ ସଦୃଶ ଯେ ସ୍ତିରୀ । ମାନେ ତାହାଙ୍କ ସଙ୍ଗେ ହରି ।୬୯।
ପ୍ରତ୍ୟଙ୍ଗେ ଆଲିଙ୍ଗନ କରେ । କ୍ଷଣେହେ ମୁରୁଛି ନ ପାରେ ।୭୦।
ସେ ଅନ୍ଧକାର ସ୍ଥାନ ପୁଣି । କେମନ୍ତ ଅଟଇ ମିତଣି ।୭୧।
ନିକୁଞ୍ଜ ଗୃହ ଚଉପାଶେ । ନୀଳ ବସନ ବେଢ଼ି କି ସେ ।୭୨।
ଯେ ନାରୀ ଚତୁର ଅଟଇ । ତା ଚିତ୍ତ ସେ ସ୍ଥାନେ ଘଟଇ ।୭୩।
ଚକ୍ଷୁରେ ରଞ୍ଜନ୍ତେ କଜ୍ଜଳ । ଅନ୍ଧାର ନିଶିକି ନିର୍ମଳ ।୭୪।
ଶ୍ରବଣେ ଭରିଅଛି ଆର । ମୟୂର ପୁଚ୍ଛ ଶୋଭାକର ।୭୫।

ମସ୍ତକେ ନୀଳୋତ୍ପଳ ମାଳା । ଭରିଛି ସେ ଦିଶଇ କଳା ।୭୬।
କୁଚରେ କସ୍ତୁରୀକୁ ଲିହି । ସେହି ତ କଳା ଗୋ ଦିଶଇ ।୭୭।
ଯେଣେ ଚାହିଁଲେ ଚାରିକତି । ବେଢ଼ିଣ ରହିଅଛି ରାତି ।୭୮।
ଏମନ୍ତ ରାତିରେ ଗୋ ବାଳୀ । ଭେଟ ତୁ ଯାଇଁ ବନମାଳୀ ।୭୯।

କାଶ୍ମୀରଗୌରବପୁଷାମଭିସାରିକାଣା-
ମାବଦ୍ଧରେଖମଭିତୋ ରୁଚିମଞ୍ଜରୀଭିଃ ।
ଏତତ୍ତମାଳଦଳନୀଳତମଂ ତମିସ୍ରଂ
ତତ୍ପ୍ରେମହେମନିକଷୋପଳତାଂ ତନୋତି ॥ ଶ୍ଳୋକ-୬୦ ॥

ଅର୍ଥ -

ଏ ଅନ୍ଧକାରେ ଆଜ ମିତ । ଶୋଭା ତୁ ପାଉଛୁ କେମନ୍ତ ।୮୦।
ନୀଳବର୍ଣ୍ଣ ଯେ ଅନ୍ଧକାର । ହୋଇଲା କଷଟି ପଥର ।୮୧।
ତହିଁକି ସୁବର୍ଣ୍ଣର ଦେହ । ଅଭିସାରିକା ନାରୀ ଦେହ ।୮୨।
ଏକେଁ ତ ଗଉର ତୋ କାୟେ । ଦୁଜେ କୁଙ୍କୁମ ଲେପିଥାଏ ।୮୩।
କଷଟି ପଥର ଏମନ୍ତ । ଦିଶଇ ଶୁଦ୍ଧ ସୁବର୍ଣ୍ଣ ତ ।୮୪।
ସୁବର୍ଣ୍ଣ ପ୍ରାୟେ ତୋର ଅଙ୍ଗ । କଷଟି ପଥର ଶ୍ରୀରଙ୍ଗ ।୮୫।
ଆଜ ସେ କଷିବାକୁ ବାରେ । ବିଚାର କରି ହୃଦସ୍ଥରେ ।୮୬।

ହାରାବାଳୀ ତରଳକାଞ୍ଚନକାଞ୍ଚିଦାମ-
ମଞ୍ଜୀରକଙ୍କଣମଣିଦ୍ୟୁତିଦୀପିତସ୍ୟ ।
ଦ୍ୱାରେ ନିକୁଞ୍ଜନିଳୟସ୍ୟ ହରିଂ ବିଲୋକ୍ୟ
ବ୍ରୀଡ଼ାବତୀମଥ ସଖୀମିୟମିତ୍ୟୁବାଚ ॥ ଶ୍ଳୋକ-୬୧ ॥

ଅର୍ଥ -

ଏ ତୋର ପରିରମ୍ଭ କାଳେ । କୁସୁମ ସଂଆର ଭକ୍ଷଲେ (?) ।୮୭।
ଯେମନ୍ତ ଦିଶେ ଶୋଭାକର । ସେ କଥା ମନେ ଅନୁସର ।୮୮।
ଯହୁଁ ଏମନ୍ତ ସଖି କହେ । ଶୁଣି ରାଧିକା ତୋଷ ହୋଏ ।୮୯।
ହରଷ ହୋଇ ଚନ୍ଦ୍ରମୁଖି । ମନର ମାନ ତା ଉପେକ୍ଷି ।୯୦।

ମିଳିଲା କୁଞ୍ଜଦ୍ୱାରେ ଯାଇଁ । ଶ୍ରୀକୃଷ୍ଣ ବଦନକୁ ଚାହିଁ ।୯୧।
ଲଜ୍ଜା ପାଇଣ ଶୁଭ୍ରକେଶୀ । ମସ୍ତକ ପୋତିଅଛି ବସି ।୯୨।
କେମନ୍ତ ଦିଶୁଅଛି ଶୋଭା । ସେ କୁଞ୍ଜ ଗୃହଦ୍ୱାର ଅବା ।୯୩।
ହାରାବଳି ଯେ ହାରମାନେ । ଚଞ୍ଚଳ ହୋନ୍ତେ ଅନୁକ୍ଷଣେ ।୯୪।
କଙ୍କଣ ମଞ୍ଜୀର ସହିତେ । କଟୀ ମେଖଳା ଆଦି ଯେତେ ।୯୫।
ଏହାଙ୍କ ତେଜେ କରି ଅତି । ଛୁଟିଲା ଅନ୍ଧକାର ରାତି ।୯୬।
ଆଲୋକ ହେଲା କୁଞ୍ଜଘର । ଦିଶିଲା ଯେ ଯଉଁଠି ବର ।୯୭।
ଭୋ ସାଧୁ ଜନମାନେ ମୋର । ଅପ୍ରାଧ ମନରେ ନ ଧର ।୯୮।
ମଧୁର ଅଟନ୍ତି ଯେ ହରି । ଚିତ୍ତ ହୃଦସ୍ଥ ମଧ୍ୟେ ଧରି ।୯୯।
ଏ ଗୀତ କଣ୍ଠରେ ତୁ ଭର । ବସିଣ ଥାଉ ନିରନ୍ତର ।୧୦୦।
ଯେ ଚିନ୍ତିପାରେ ହରି ନାମ । ଏ ତାକୁ ଅଟେ ଅଭିରାମ ।୧୦୧।
ଶରଣ ମାଗଇ ବଜରି । ଚରଣ ତଳେ ରଖ ହରି ।୧୦୨।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ ଗୃହପ୍ରବେଶବର୍ଣ୍ଣନେ*
*ମୂତବଜରିଦାସେନ କୃତୌ ନାମ*
*ଦ୍ୱାବିଂଶୋଽଧ୍ୟାୟଃ ।*

# ତ୍ରୟୋବିଂଶ ଅଧ୍ୟାୟ

(ଦେଶବରାଡ଼ୀରାଗରୂପକତାଳାଭ୍ୟାଂ ଗୀୟତେ)

ଗୀତ -

*ମଞ୍ଜୁତରକୁଞ୍ଜତଳକେଳିସଦନେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ ରତିରଭସହସିତବଦନେ ॥ ଧ୍ରୁବମ୍-୧ ॥*

ଅର୍ଥ -

ଶୁଣ ସୁବୁଦ୍ଧି ସାଧୁଜନ । ଯେ ଅର୍ଥଗୋବିନ୍ଦ ଲେଖନ ।୧।
ବରାଡ଼ୀ ରାଗେଣ ଗୀୟତେ । ଏକବିଂଶତି ଗାଥା ଅର୍ଥେ ।୨।
ଗୀତଗୋବିନ୍ଦ ଅର୍ଥମାନ । ଧ୍ରୁବ ବଚନ ଏ ଲେଖନ ।୩।
କହୁଛି ରାଧା ଆଗେ ସଖୀ । ଶୁଣ ଶରଦ ଚନ୍ଦ୍ରମୁଖୀ ।୪।
ଭୋ ପ୍ରିୟେ ରାଧିକେ ମୋହର । ପ୍ରବେଶ ମାଧବ ଛାମୁର ।୫।
ଏ କୁଞ୍ଜ କୁଟୀର ଭିତର । ବେଭାରେ ଅଟଇ ସୁନ୍ଦର ।୬।
ବିବିଧ ରଙ୍ଗେ କର କେଳି । କୃଷ୍ଣ ସଙ୍ଗତେ ଆଜ ମିଳି ।୭।
ରତିରସରେ ବ୍ୟଗ୍ର ହୋଇ । କ୍ରୀଡ଼ା ଆରମ୍ଭ କର ସହି ।୮।
ସେ ତୋର ପ୍ରାଣନାଥ ଯେଣୁ । ମୁଁ ତୋତେ କହିଲି ଗୋ ତେଣୁ ।୯।
ତୁହି ତ ଜୀବନ ତାହାର । ହରଷେ ଆଲିଙ୍ଗନ କର ।୧୦।
ଭୋ ପ୍ରିୟେ ମାଧବ ପାରୁଶେ । ପ୍ରବେଶ ହୁଅ ଗୋ ହରଷେ ।୧୧।

ଗୀତ -

*ନବଭବଦଶୋକଦଳଶୟନସାରେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ କୁଚକଳଶତରଳହାରେ ॥୨॥*

ଅର୍ଥ -

ନବ ପଲ୍ଲବ ଶୋଭାବନ । ଦିଶୁଛି ଅଶୋକ ଯେସନ ।୧୨।
କୋମଳ ପତ୍ର ତହୁଁ ଆଣି । ଶୋଇବା ଅର୍ଥେ ଚକ୍ରପାଣି ।୧୩।
ଶଯ୍ୟା କରିଛି ଯତ୍ନ କରି । କୁଞ୍ଜ ଗୃହରେ ଗୋ ସୁନ୍ଦରି ।୧୪।
କୁଚ କଳଶ ପରେ ତୋର । ଚଞ୍ଚଳ ହୋଇଛି ସେ ହାର ।୧୫।
କୃଷ୍ଣ ସଙ୍ଗତେ କ୍ରୀଡ଼ା କର । ସେ ପ୍ରାଣବଲ୍ଲଭ ତୋହର ।୧୬।

ଗୀତ -

*କୁସୁମଚୟରଚିତଶୁଚିବାସଗେହେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ କୁସୁମସୁକୁମାରଦେହେ ॥୩॥*

ଅର୍ଥ -

ଏ କୁଞ୍ଜ କୁଟୀର ମିତଣି । କେମନ୍ତ ହୋଇଅଛି ପୁଣି ।୧୭।
କୁସୁମମାନେ ଫୁଟିବାରେ । ସୁନ୍ଦର ଦିଶୁଛି ଅପାରେ ।୧୮।
ଭୋ ସଖି ! ମାଧବ ନିକଟ । ବହନ ହୋଇଁ ଯାଇଁ ଭେଟ ।୧୯।
ବିଳାସ କ୍ରୀଡ଼ାକୁ ଯେ କହି । ତା ସଙ୍ଗେ ଆରମ୍ଭ ତୁ ଯାଇଁ ।୨୦।
ସେ କୃଷ୍ଣ କେମନ୍ତ ଅଟଇ । ତା ଆଗେ କହିବା ବୁଝାଇ ।୨୧।
କୁସୁମ ପୁଷ୍ପକୁ ଯେ କହି । ତହୁଁ ସୁକୁମାର ତା ଦେହି ।୨୨।

ଗୀତ -

*ଚଳ ମଳୟବନପବନସୁରଭିଶୀତେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ ରତିବଳିତଲଳିତଗୀତେ ॥୪॥*

ଅର୍ଥ -

ଏ କୁଞ୍ଜ ଗୃହଗୋଟି ସହି । କହିବା କେମନ୍ତ ଅଟଇ ।୨୩।
ମଳୟ କନ୍ଦରୁ ଗୋ ସହେ । ପବନ ମନ୍ଦ ମନ୍ଦ ବହେ ।୨୪।

ତେଣୁ କରି ସୁନ୍ଦର ହୋଇ । ଏ ଲତା ଗୃହଗୋଟି ଶୋହି ।୨୫।
ବିଳାସ ରସେ ହୋଇ ବଶ । ତୋ ଗୁଣ ଗୁଣି ପୀତବାସ ।୨୬।
ପଞ୍ଚମେ କରି ରସଯୁକ୍ତ । ତୋ ନାମେ ଗାଉଅଛି ଗୀତ ।୨୭।
ଭୋ ସଖି ରାଧିକେ ହରଷ । ମାଧବ ଛାମୁରେ ପ୍ରବେଶ ।୨୮।

ଗୀତ -

*ବିତତବହୁବଲ୍ଲିନବପଲ୍ଲବଘନେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ ଚିରମଳସପୀନଜଘନେ ॥୫॥*

ଅର୍ଥ -

ଏ କୁଞ୍ଜ ଗୃହଗୋଟି ସହି । ପୁଣି କେମନ୍ତ ଅଛି ହୋଇ ।୨୯।
ବିସ୍ତାର ଲତାମାନେ ଯେ ସେ । ନବ ପଲ୍ଲବେ ଶୋଭା ଦିଶେ ।୩୦।
ଏ ନ୍ୟାଉଁ କରି ବଡ଼ ଘନ । ଅନ୍ଧାର ହୋଇଛି ସେ ସ୍ଥାନ ।୩୧।
ଚିର ବିରହ ବ୍ୟଥା ଲାଜ । ହୃଦରୁ ଛଡ଼ାଅ ତା ଆଜ ।୩୨।
ଏ ପୀନ ଜଘନ ଯେ ତୋର । ସ୍ୱଭାବେ ହୋଇଛି ଅଥିର ।୩୩।
କୃଷ୍ଣକୁ ଭେଟ ଘେନି ଏହା । ସେ ତ ସ୍ୱଭାବେ ତୋର ନାହା ।୩୪।

ଗୀତ -

*ମଧୁମୁଦିତମଧୁପକୁଳକଳିତରାବେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ ମଦନଶରରଭସଭାବେ ॥୬॥*

ଅର୍ଥ -

ମଧୁ ଯେ ବସନ୍ତ ସମୟେ । ଏଣୁ ହରଷ ହୋଇ ସହେ ।୩୫।
ମଧୁପ ଭ୍ରମର ଯେ ମାନେ । ରୁଣ୍ଡ ହୋଇଣ ଏକ ସ୍ଥାନେ ।୩୬।
ଶବଦ କରୁଛନ୍ତି ପୂରି । ଲତାଗୃହରେ ଗୋ ସୁନ୍ଦରି ।୩୭।

ମଦନ ଶରେ ତନୁ ତୋର । ସ୍ୱଭାବେ ହୋଉଛି ଅଥିର ।୩୮।
ଏଣୁ ତୁ ମାଧବ ପାରୁଶେ । ପ୍ରବେଶ ହୁଅ ଗୋ ହରଷେ ।୩୯।

ଗୀତ -

*ମଧୁରତରପିକନିକରନିନଦମୁଖରେ ।*
*ପ୍ରବିଶ ରାଧେ ମାଧବସମୀପମିହ*
*ବିଳସ ଦଶନରୁଚିରୁଚିରଶିଖରେ ॥୭॥*

ଅର୍ଥ -

ଏ ଋତୁ ବସନ୍ତ ସମୟେ । ଚଞ୍ଚଳ ହୋଇଛନ୍ତି ସହେ ।୪୦।
ଏମନ୍ତ କୋକିଳ ଯେ ପନ୍ତି । ତାଙ୍କ ଶବଦେ କରି ଅତି ।୪୧।
ଶୁଭଇ କୋଳାହଳ ଧ୍ୱନି । ଏ କୁଞ୍ଜ କୁଟୀରେ ମିତଣି ।୪୨।
ରୁଚିର ଦନ୍ତପନ୍ତି ତୋର । ଦିଶୁଛି କେମନ୍ତ ସୁନ୍ଦର ।୪୩।
ପାଚିଲା ଦାଡ଼ିମର ବୀଜ । ଜିଣି ବିରାଜମାନ ତେଜ ।୪୪।
ମାଧବ ପାରୁଶକୁ ଯାଇ । ପ୍ରବେଶ ହୁଅ ଚନ୍ଦ୍ରମୁହିଁ ।୪୫।
ବିଳାସ ରସମାନ ତାର । ସଂଗତେ ଆରମ୍ଭ ତୁ କର ।୪୬।

ଭଣିତା -

*ବିହିତପଦ୍ମାବତୀସୁଖସମାଜେ ।*
*କୁରୁ ମୁରାରେ ମଙ୍ଗଳଶତାନି*
*ଭଣତି ଜୟଦେବକବିରାଜରାଜେ ॥୮॥*

ତ୍ୱାଂ ଚିତ୍ତେନ ଚିରଂ ବହନ୍ନୟମତିଶ୍ରାନ୍ତୋ ଭୃଶଂ ତାପିତଃ
କନ୍ଦର୍ପେଣ ଚ ପାତୁମିଚ୍ଛତି ସୁଧାସମ୍ବାଧବିମ୍ବାଧରମ୍ ।
ଅସ୍ୟାଙ୍କଂ ତଦଳଂକୁରୁ କ୍ଷଣମିହ ଭ୍ରୂକ୍ଷେପଲକ୍ଷ୍ମୀଲବ-
କ୍ରୀତେ ଦାସ ଇବୋପସେବିତପଦାମ୍ଭୋଜେ କୁତଃ ସମ୍ଭ୍ରମଃ ॥ ଶ୍ଳୋକ-୬୨ ॥

ଅର୍ଥ -

ଭୋ ରାଧେ ତୋତେ ନିରନ୍ତରେ । ବହିଣ ଅଛି ସେ ଚିତ୍ତରେ ।୪୭।
ତୋ କଥା ଶୁଣି ତାର ଚିତ୍ତେ । ସନ୍ତାପ ପାଉଥାଇଁ ନିତ୍ୟେ ।୪୮।

ଶ୍ରୀକୃଷ୍ଣ ଗଳାରେ ଗୋ ତୋତେ । ଲମ୍ଭାନ୍ତେ ଦିଶିବ ଏମନ୍ତେ ।୪୯।
ଅଷ୍ଟଚନ୍ଦ୍ରରେ ଜଡ଼ି କିବା । ପଦେକ ଯେତ୍ନେ ପାଇ ଶୋଭା ।୫୦।
ଏମନ୍ତ ଦିଶିବଟି କାନ୍ଧେ । ତବ ବଦନ କୃଷ୍ଣ ହୃଦେ ।୫୧।
ରାଧିକେ ଉଠ ତୁ ବହନ । କୃଷ୍ଣଙ୍କୁ କର ଆଲିଙ୍ଗନ ।୫୨।
କନ୍ଦର୍ପ ତାପେ କରି ହରି । ଅଥିର ହୋଇଛି ଯେ ଶିରୀ ।୫୩।
ଏ ତୋର ବିମ୍ବାଧର ସୁଧା । ଦେଇଣ ଖଣ୍ଡ ତାର ବାଧା ।୫୪।
ଚିରକାଳକୁ ପ୍ରତିଆଶା । ସେ ହରି କରିଛି ଭରସା ।୫୫।
ବହୁତ ଶ୍ରମ ପାଇଁଅଛି । ଚିରକାଳହୁଁ ଶିରୀବଛି ।୫୬।
ତୋତେ ପାଇବ କ୍ଷଣେ ଯେବେ । ସବୁ ହିଁ ପାସୋରିବ ତେବେ ।୫୭।
ଏ ତୋର ଚରଣରେ ଆର । ସେବା ହିଁ କଲା ଚକ୍ରଧର ।୫୮।
ଏମନ୍ତ ଦାସଜନ ଯେହୁ । ତାକୁ ସଂଭ୍ରମ କିମ୍ପା ହୋଉ ।୫୯।
ସେବକ କରିଅଛୁ ଯାକୁ । ଦୟା ନ କରୁ କିଂପା ତାକୁ ।୬୦।
ତାହାର ଦୋଷ କ୍ଷମା କର । ଉପରେ ନ କରିବ ଆର ।୬୧।

**ସା ସସାଧ୍ୱସସାନନ୍ଦଂ ଗୋବିନ୍ଦେ ଲୋଳଲୋଚନା ।**
**ଶିଞ୍ଜାନମଞ୍ଜୁମଞ୍ଜୀରଂ ପ୍ରବିବେଶ ନିବେଶନମ୍ ॥ ଶ୍ଳୋକ-୬୩ ॥**

ଅର୍ଥ -

ଯହୁଁ ଏମନ୍ତ ସଖୀ କହେ । ଶୁଣି ରାଧିକା ହର୍ଷ ହୋଏ ।୬୨।
ଗୋବିନ୍ଦ ପାଦେ ତାର ମନ । ସ୍ୱଭାବେ ହୋଇଛି ଉଛନ୍ନ ।୬୩।
ଲୋଚନ ଦୁଇ ଏଣୁ କରି । ଚଞ୍ଚଳ ହୋଇଛି ଅପାରି ।୬୪।
ବହୁତ ବ୍ୟକ୍ତଭାବ କରି । ନୂପୁର ବଜାଇ ସୁନ୍ଦରୀ ।୬୫।
ନିକୁଞ୍ଜ ଗୃହରେ ପ୍ରବେଶ । ଯହିଁ ଅଛନ୍ତି ପୀତବାସ ।୬୬।
ଶ୍ରୀକୃଷ୍ଣ ରାଧା ଭେଟ ବେନି । ସୁଜନେ କର ହରି ଧ୍ୱନି ।୬୭।
ସୁଜନେ ଏ ଗୀତ ତୁମ୍ଭର । ନିରତେ ହେଉ ସୁଖକର ।୬୮।
ମଙ୍ଗଳ ଶତ ଯେ ତାଙ୍କରି । ସମସ୍ତ ଦୋଷମାନ ହରି ।୬୯।

ମୁଁ ତୁମ୍ଭ ଅଟଇଁ ସେବକ । ଭବ ସଙ୍କଟୁଁ ମୋତେ ରଖ ।୭୦।
ଯେବେ ନୋହିବ ସାହା ମୋରେ । ଆଉ ମୁଁ କହିବି କାହାରେ ।୭୧।
ଶ୍ରୀଗୁରୁ କହିଛନ୍ତି ମୋର । ସାଧୁ ଚରଣେ ସେବାକର ।୭୨।
ସମସ୍ତ ଶାସ୍ତ୍ର ଶୁଣିଲଇଁ । ସୁଜନ ବିନୁ ଗତି ନାହିଁ ।୭୩।
ମୁହିଁ ବିଚାର କଲି ବାଛି । ସଂସାରେ ଯେତେ ସୁଖ ଅଛି ।୭୪।
ସବୁହୁଁ ସନ୍ଥ ସଙ୍ଗ ସାର । ଏ ବିନୁ ନାହିଁ ଅନ୍ୟେ ପାର ।୭୫।
ସୁଜନ ଚରଣେ ମୋହର । କୋଟିଏ କୋଟି ନମସ୍କାର ।୭୬।
ମୂଢ଼ ବଜରି ଦାସ ନିତ୍ୟେ । ସୁଜନ ଚରଣକୁ ଚିନ୍ତେ ।୭୭।

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ*
*ମୂଢ଼ବଜରିଦାସେନ କୃତୌ କୁଞ୍ଜକୁଟୀରବର୍ଣ୍ଣନେ ନାମ*
*ତ୍ରୟୋବିଂଶୋଽଧ୍ୟାୟଃ ।*

# ଚତୁର୍ବିଂଶ ଅଧ୍ୟାୟ

(ବରାଡ଼ୀରାଗରୂପକତାଳାଭ୍ୟାଂ ଗୀୟତେ)

ଗୀତ -

*ରାଧାବଦନବିଲୋକନବିକଶିତବିବିଧବିକାରବିଭଙ୍ଗମ୍*
*ଜଳନିଧିମିବ ବିଧୁମଣ୍ଡଳଦର୍ଶନତରଳିତତୁଙ୍ଗତରଙ୍ଗମ୍ ।*
*ହରିମେକରସଂ ଚିରମଭିଳଷିତବିଳାସମ୍*
*ସା ଦଦର୍ଶ ଗୁରୁହର୍ଷବଶଂବଦବଦନମନଙ୍ଗବିକାଶମ୍ ॥୧॥*

ଅର୍ଥ -

ଶୁଣ ସୁଜନେ ଅନ୍ୟ କଥା । ଯେ ଅର୍ଥଗୋବିନ୍ଦ ବେବସ୍ଥା ।୧।
ବରାଡ଼ୀ ରାଗେଣ ଗୀୟତେ । ଦ୍ୱିବିଂଶ ଗାଥାର ଯେ ଅର୍ଥେ ।୨।
ହରଷ ହୋଇଣ ରାଧିକା । ପ୍ରବେଶ କୃଷ୍ଣ ପାଶେ ଏକା ।୩।
ହରିକି ଦେଖିଣ ସୁନ୍ଦରୀ । ହରଷ ହୋଇଲା ଅପାରି ।୪।
କେମନ୍ତ ହୋଇଛି ସେ ହରି । ଶୁଣିବା କହିବା ବିସ୍ତାରି ।୫।
ପାଇଁ କାଳହୁ ଚିତ୍ତ ତାର । ବଳିଛି ବିଳାସ କଳାର ।୬।
ଏଣୁ ତ କରି ହୃଷ୍ଟ ତାର । ବହୁତ ହୋଇଛି ହୃଦର ।୭।
ଅନଙ୍ଗ ବିକାର ବିଶେଷ । ପାଉଁ ଅଛନ୍ତି ହୃଷୀକେଶ ।୮।
ଦେଖି ରାଧିକାମୁଖ ହରି । ହରଷ ହୋଇଲେ ଅପାରି ।୯।
ବିବିଧ ବିକାର ଯେ ଥିଲା । ଦର୍ଶନମାତ୍ରେ ଦୂରଗଲା ।୧୦।
ଚନ୍ଦ୍ରକୁ ଦେଖିଣ ଯେମନ୍ତ । ସମୁଦ୍ର ହୁଅଇ ଉଛତ ।୧୧।
ତରଳ ଚଞ୍ଚଳ ଲହରୀ । ଆନନ୍ଦେ କୁଳେ ଆଣି ମାରି ।୧୨।
ତେହ୍ନେ ପରାଏ ହୋଏ ଅତି । ଆନନ୍ଦ ହୋଇଲେ ଶ୍ରୀପତି ।୧୩।
ଦେଖିଣ ରାଧିକା ଶ୍ରୀମୁଖ । ହରି ଲଭିଲେ ମହାସୁଖ ।୧୪।

ଗୀତ -

*ହାରମମଳତରତାରମୁରସି ଦଧତଂ ପରିଲକ୍ଷ୍ୟ ବିଦୁରମ୍ ।*
*ସ୍ଫୁଟତରଫେନକଦମ୍ବକରମ୍ବିତମିବ ଯମୁନାଜଳପୂରମ୍ ॥୨॥*

ଅର୍ଥ -

| | | | |
|---|---|---|---|
| ପୁଣି ସେ ଶ୍ରୀକୃଷ୍ଣ କେମନ୍ତ | । | ହୋଇଛି ଶୁଣ ତଥି ଅର୍ଥ | ।୧୫। |
| ନିର୍ମଳ ମୁକୁତା ଯେ ହାର | । | ହୃଦରେ ଦିଶୁଛି ସୁନ୍ଦର | ।୧୬। |
| କେମନ୍ତ ଦିଶୁଛି ସେ ଅବା | । | ତାହା ବିସ୍ତାରି କହିଦେବା | ।୧୭। |
| ଯମୁନା ନଦୀରେ ଯେମନ୍ତ | । | ପାଶରେ ଫେନମାନେ ଜାତ | ।୧୮। |
| ତେମନ୍ତ ପ୍ରାଏ ଅଛି ଶୋହି | । | ଆର କଥାଏଁ ଦେବା କହି | ।୧୯। |
| ନିର୍ମଳ ଘନ ମେଘେ କିବା | । | ତାରକାଗଣ ପାନ୍ତି ଶୋଭା | ।୨୦। |
| ଲକ୍ଷନ୍ତେ ଶ୍ରୀକୃଷ୍ଣ ହୃଦର | । | ଏମନ୍ତ ଦିଶୁଅଛି ହାର | ।୨୧। |

ଗୀତ -

*ଶ୍ୟାମଳମୃଦୁଳକଳେବରମଣ୍ଡଳମଧିଗତଗୌରଦୁକୂଳମ୍ ।*
*ନୀଳନଳିନମିବ ପୀତପରାଗପଟଳଭରବଳୟିତମୂଳମ୍ ॥୩॥*

ଅର୍ଥ -

| | | | |
|---|---|---|---|
| ପୁଣି କେମନ୍ତ ପ୍ରାଏ ଅବା | । | ସେ କୃଷ୍ଣ ପାଉଁଅଛି ଶୋଭା | ।୨୨। |
| ଶ୍ୟାମଳ କଳାକୁ ଯେ କହି | । | ମୃଦୁଳ କୋମଳ ଅଟଇ | ।୨୩। |
| ଏମନ୍ତ କଳେବର ଯେ ସେ | । | ସ୍ୱଭାବେ ମନୋହର ଦିଶେ | ।୨୪। |
| ଏମନ୍ତ ଶ୍ରୀଅଙ୍ଗରେ କାହ୍ନ | । | ପିନ୍ଧିଛି ଗଉର ବସନ | ।୨୫। |
| ସେ କେହ୍ନେ ପାଉଅଛି ଶୋଭା | । | ନବ ଜଳଦ ପ୍ରାଏ ଆଭା | ।୨୬। |
| ସେ ନବ ଜଳଧର ତେଜ | । | ବହୁତ ପ୍ରକାରେ ବିରାଜ | ।୨୭। |
| ସେ କଳା କେ କୁଙ୍କୁମ ଜ୍ୟୋତି | । | ଦିଶଇଁ ଆନ ଆନ ମୂର୍ତ୍ତି | ।୨୮। |
| ଶ୍ରୀଅଙ୍ଗ ଅନୁଜ ପରାଏ | । | ବସନ କୁଙ୍କୁମ କି ଶୋହେ | ।୨୯। |
| ଏଣୁ ନୀଳ ଉତ୍ପଳ ପ୍ରାଏ | । | ସୁନ୍ଦର ଦିଶୁଅଛି କାୟେ | ।୩୦। |

ଗୀତ -

*ତରଳଦୃଗଞ୍ଚଳଚଳନମନୋହରବଦନଜନିତରତିରାଗମ୍ ।*
*ସ୍ଫୁଟକମଳୋଦରଖେଳିତଖଞ୍ଜନଯୁଗମିବ ଶରଦି ତଡ଼ାଗମ୍ ॥୪॥*

ଅର୍ଥ -

ପୁଣି କେମନ୍ତ ପ୍ରାଏ ଅବା । ଶ୍ରୀକୃଷ୍ଣ ପାଉଛନ୍ତି ଶୋଭା ।୩୧।
ତରଳ ହୋଇଅଛି ଆର । ସେ ଚକ୍ଷୁ ପ୍ରାନ୍ତର ଦୃଗଳ ।୩୨।
ଏଣୁ ସବୁରି ମନମାନ । ମୋହୁଛି ଶ୍ରୀକୃଷ୍ଣ ବଦନ ।୩୩।
ତଡ଼ାଗ ପୁଷ୍କରିଣୀ କହି । ତହିଁରେ ଫୁଟି ବିକାଶଇ ।୩୪।
ଏମନ୍ତ ପଦ୍ମପୁଷ୍ପ ବେନି । ଖଞ୍ଜରୀଟ ସାକ୍ଷାତ ଘେନି ।୩୫।
ବେନି ଲୋଚନେ ସନ୍ନିଧାନେ । କ୍ରୀଡ଼ା କରନ୍ତି ଅନୁକ୍ଷଣେ ।୩୬।
ଶରଦକାଳେ ଯେହ୍ନେ ଶୋହେ । ଦିଶୁଛି ତେମନ୍ତ ପରାଏ ।୩୭।

ଗୀତ -

*ବଦନକମଳପରିଶୀଳନମିଳିତମିହିରସମକୁଣ୍ଡଳଶୋଭମ୍ ।*
*ସ୍ମିତରୁଚିକୁସୁମସମୁଲ୍ଲସିତାଧରପଲ୍ଲବକୃତରତିଲୋଭମ୍ ॥୫॥*

ଅର୍ଥ -

କେମନ୍ତ ପାଉଅଛି ଶୋଭା । ପୁଣି ସେ ବାସୁଦେବ ଅବା ।୩୮।
ବଦନ ମୁଖକୁ ଯେ କହି । ସେ ପଦ୍ମ ପ୍ରାୟେ ଅଛି ହୋଇ ।୩୯।
ତା ପାଶେ ଚଞ୍ଚଳତା ହୋଇ । ଲମ୍ବନ୍ତି କୁଣ୍ଡଳ ଯେ ଦୁଇ ।୪୦।
ଶ୍ରବଣେ ଝଳହଳ ହୋନ୍ତେ । ସେ ଶୋଭା ପାଉଛି ବହୁତେ ।୪୧।
ଅନ୍ଧାର ନିଶି କି ଉଜ୍ଜ୍ୱଳ । ଶ୍ରୀମୁଖ ଦିଶେ ଝଳହଳ ।୪୨।
ଅଧର ପଲ୍ଲବ ତାହାର । ବନ୍ଧୁଲୀ କୁସୁମ ଆକାର ।୪୩।
ଦରହସିତ ହୋଇବାରେ । ସେ ଶୋଭା ପାଉଛି ଅଧରେ ।୪୪।
ରୁଚି ଦଧର (ରୁଚିରାଧର) ହରି ଯେଣୁ । ରତିକି ଲୋଭ କଲା ତେଣୁ ।୪୫।
ବହୁତ ବ୍ୟଗ୍ର ଅଛି ହୋଇ । ମଦନ ଉଚ୍ଛୁକେ କହାଇ ।୪୬।

ଗୀତ -

*ଶଶିକିରଣଛୁରିତୋଦରଜଳଧରସୁନ୍ଦରସକୁସୁମକେଶମ୍ ।*
*ତିମିରୋଦିତବିଧୁମଣ୍ଡଳନିର୍ମଳମଳୟଜଳତିଳକନିବେଶମ୍ ॥୬॥*

ଅର୍ଥ -

ପୁଣି କେମନ୍ତ ପ୍ରାଏ ଅବା । ସେ କୃଷ୍ଣ ପାଉଛନ୍ତି ଶୋଭା ।୪୭।
ଚନ୍ଦ୍ର କିରଣେ ଜଳଧର । ଯେମନ୍ତ ଦିଶଇ ସୁନ୍ଦର ।୪୮।
କେଶରେ ପୁଷ୍ପ ଖୋଷିବାରେ । ଏମନ୍ତ ପ୍ରାଏ ଶୋଭାକରେ ।୪୯।
ଶରଦ ତିମିର ସମୟେ । ପୂର୍ଣ୍ଣିମା ଚନ୍ଦ୍ର ଯେହ୍ନେ ଶୋହେ ।୫୦।
କପୋଳେ ଚନ୍ଦନର ଫୋଟା । ତେମନ୍ତ ଦିଶେ ଚନ୍ଦ୍ରଗୋଟା ।୫୧।

ଗୀତ -

*ବିପୁଳପୁଳକଭରଦନ୍ତୁରିତଂ ରତିକେଳିକଳାଭିରଧୀରମ୍ ।*
*ମଣିଗଣକିରଣସମୂହସମୁଜ୍ଜ୍ୱଳଭୂଷଣସୁଭଗଶରୀରମ୍ ॥୭॥*

ଅର୍ଥ -

ପୁଣି କେମନ୍ତ ପ୍ରାୟେ ଅବା । ଶ୍ରୀକୃଷ୍ଣ ପାଉଛନ୍ତି ଶୋଭା ।୫୨।
ରତିକଳା ଜୟେ ନ କରି । ଅଥିର ହୋଇଛି ତା ଶରୀ ।୫୩।
ବିପୁଳ ପୁଲକ ତାହାର । ରୋମାଞ୍ଚ ହୋଇଅଛି ଆର ।୫୪।
ମଣି ମାଣିକ୍ୟ ତେଜେ କରି । ସୁନ୍ଦର ଦିଶୁଅଛି ଶରୀ ।୫୫।

ଭଣିତା -

*ଶ୍ରୀଜୟଦେବଭଣିତବିଭବଦ୍ୱିଗୁଣୀକୃତଭୂଷଣଭାରମ୍ ।*
*ପ୍ରଣମତ ହୃଦି ବିନିଧାୟ ହରିଂ ସୁଚିରଂ ସୁକୃତୋଦୟସାରମ୍ ॥୮॥*

ଅତିକ୍ରମ୍ୟାପାଙ୍ଗଂ ଶ୍ରବଣପଥପର୍ଯ୍ୟନ୍ତଗମନ -
ପ୍ରୟାସେନୈବାକ୍ଷ୍ଣୋସ୍ତରଳତରତାରଂ ପତିତୟୋଃ ।
ତଦାନୀଂ ରାଧାୟାଃ ପ୍ରିୟତମସମାଲୋକସମୟେ
ପପାତ ସ୍ୱେଦାମ୍ବୁଃ ପ୍ରସର ଇବ ହର୍ଷାଶ୍ରୁନିକରଃ ॥ ଶ୍ଳୋକ-୬୪ ॥

ଅର୍ଥ -

ଏମନ୍ତ ଶ୍ରୀକୃଷ୍ଣଙ୍କୁ ଦେଖି । ରାଧିକା ମନେ ହୋଇ ସୁଖୀ ।୫୬।
ଚାହିଁବା ମାତ୍ରକେ ବଦନ । ହୃଦରୁ ଗଲା ଦୁଃଖମାନ ।୫୭।
କୃଷ୍ଣଙ୍କୁ ଦେଖିବା ସମୟେ । ବଦନୁ ସ୍ୱେଦଅମ୍ବୁ ବହେ ।୫୮।
ସ୍ୱେଦାମ୍ବୁ ବୋଲି ଯାକୁ କହି । ଅର୍ଥରେ ଝାଳ ସେ ଅଟଇ ।୫୯।
ତହିଁ ପରାୟେ ହୋଇଁ ଖରେ । ହର୍ଷାଶ୍ରୁ ବହଇ ନିକରେ ।୬୦।
ହର୍ଷାଶ୍ରୁ ବୋଲି ଯାକୁ କହି । ଅର୍ଥରେ ଲୋତକ ଅଟଇ ।୬୧।
ପଡ଼ନ୍ତେ ଲୋଚନରୁ ତାର । ଏମନ୍ତ ଦିଶେ ପଟାନ୍ତର ।୬୨।
ଶ୍ରବଣ ପଥ ଯେ ତାହାରେ । ଅତିକ୍ରମି ତା ଚାହିଁବାରେ ।୬୩।
ପ୍ରାଏ ସେ କରି ସେଟି ତାର । ଲୋତକ ହୋଇଲା ବାହାର ।୬୪।
କାହା ପରାୟେ ଶୋଭା ଅବା । ପାଇଲା ତାହା କହିଦେବା ।୬୫।
ହାରମାନଙ୍କ ଚଞ୍ଚଳରେ । ଏମନ୍ତ ଦିଶଇଁ ବିଚାରେ ।୬୬।
ଲୋତକ ବିନ୍ଦୁମାନେ ତାର । ସ୍ୱର୍ଗରୁ ଖସେ ସିନ୍ଧୁଫଳ ।୬୭।
ପଡ଼ନ୍ତି ମୁକୁତା ପରାୟେ । ସୁନ୍ଦର ଦିଶୁଅଛି ତାୟେ ।୬୮।

ଭଜନ୍ତ୍ୟାସ୍ତଳ୍ପାନ୍ତଂ କୃତକପଟକଣ୍ଡୂତିପିହିତ -
ସ୍ମିତଂ ଯାତେ ଗେହାଦ୍ବହିରବହିତାଳୀପରିଜନେ ।
ପ୍ରିୟାସ୍ୟଂ ପଶ୍ୟନ୍ତ୍ୟାଃ ସ୍ମରଶରସମାହୁତସୁଭଗଂ
ସଲଜ୍ଜା ଲଜ୍ଜାପି ବ୍ୟଗମଦିବ ଦୂରଂ ମୃଗଦୃଶଃ ॥ ଶ୍ଳୋକ-୬୫ ॥

ଅର୍ଥ -

ମୃଗଲୋଚନୀ ଯେ ରାଧିକା । ହୃଦରୁ ଗଲା ତାର ଶଙ୍କା ।୬୯।
ଲଜ୍ଜା ତାହାର ଯେ ବା ଥିଲା । ସେ ଲାଜ ପାଇ ଦୂରଗଲା ।୭୦।
ରାଧିକା କେମନ୍ତ ହୋଇଛି । ତଳ୍ପ ଯେ ଶଯ୍ୟା ତା ଭଜିଛି ।୭୧।
ମିଛେ ହେଁ କଣ୍ଡୁଆଇ ହୋଇ । ବସିଛି କୃଷ୍ଣ ପାଶେ ଯାଇଁ ।୭୨।
କେମନ୍ତ ହୋନ୍ତେ ସତ ଅବା । ତାହା ବିସ୍ତାରି କହିଦେବା ।୭୩।
ସଖିମାନଙ୍କ ହସକୁଟି । ଭିଆଣ ଯେମନ୍ତ ହେବଟି ।୭୪।

| | | | | |
|---|---|---|---|---|
| ତେମନ୍ତ ଭିଆଇଲା ଯେଣୁ | । | ହସିଣ ସର୍ବସଖୀ ତେଣୁ | ।୭୫। |
| ବଦନେ କରମାନ ଦେଇ | । | ବହନ ଗଲେ ଆଡ଼ ହୋଇ | ।୭୬। |
| ଗୀତଗୋବିନ୍ଦ ଅର୍ଥମାନ | । | ଅର୍ଥଗୋବିନ୍ଦ ଏ ଲେଖନ | ।୭୭। |
| ଭୋ ସାଧୁଜନମାନେ ମୋର | । | ଅପ୍ରାଧ ମନରେ ନ ଧର | ।୭୮। |
| ସୁକୃତୋଦୟେ ଯାକୁ କହି | । | ପୁଣ୍ୟ ଉଦୟ ସେ ଅଟଇ | ।୭୯। |
| ଏମନ୍ତ ଅଟନ୍ତି ଯେ ହରି | । | ଚିତ୍ତ ହୃଦୟ ମର୍ଧେ ଧରି | ।୮୦। |
| କୃଷ୍ଣଙ୍କୁ ନମସ୍କାର କର | । | ଏ ଗୀତ ମନରେ ସୁମର | ।୮୧। |
| ଗୀତଗୋବିନ୍ଦ ଅର୍ଥମାନ | । | ଅର୍ଥଗୋବିନ୍ଦ ଏ ଲେଖନ | ।୮୨। |
| ଧ୍ରୁବବଚନ ପଦୁ ପଦ | । | ସଂସାର ବିଷକୁ ଏ ଗଦ | ।୮୩। |
| ମୃତ୍ୟୁଞ୍ଜୟ ଦାସ ଭଣେ | । | ଶ୍ରୀ ବାସୁଦେବଙ୍କ ଚରଣେ | ।୮୪। |

*ଇତି ଶ୍ରୀ ଅର୍ଥଗୋବିନ୍ଦେ ସରସକାବ୍ୟେ ମହାଗ୍ରନ୍ଥେ*
*ମୃତ୍ୟୁଞ୍ଜୟଦାସେନ କୃତୌ ସାନନ୍ଦଗୋବିନ୍ଦୋ ନାମ*
*ଏକାଦଶସର୍ଗଃ ।*

# ପଞ୍ଚବିଂଶ ଅଧ୍ୟାୟ

ଗତବତି ସଖୀବୃନ୍ଦେ ମନ୍ଦତ୍ରପାଭରନିର୍ଭର-
ସ୍ମରଶରବଶାକୂତସ୍ଫୀତସ୍ମିତସ୍ନପିତାଧରାମ୍ ।
ସରସମନସଂ ଦୃଷ୍ଟ୍ୱା ରାଧାଂ ମୁହୁର୍ନବପଲ୍ଲବ-
ପ୍ରସରଶୟନେ ନିକ୍ଷିପ୍ତାକ୍ଷୀମୁବାଚ ହରିଃ ପ୍ରିୟାମ୍ ॥ ଶ୍ଳୋକ-୬୬ ॥

ଅର୍ଥ -

ସୁଜନ ଶୁଣ ଦେଇ ଚିତ୍ତ । ଯେ ଗୀତଗୋବିନ୍ଦର ଅର୍ଥ ।୧।
ଯହୁଁ ସେଠାରୁ ସଖୀ ଗଲେ । ଶ୍ରୀକୃଷ୍ଣ ରାଧାକୁ ବୋଇଲେ ।୨।
ନିର୍ମଳ କିଶଳୟ କରି । ଶଯ୍ୟା ଯେ ରଚିଛନ୍ତି ହରି ।୩।
ମଦନ ଶରମାନେ ଅତି । ଶଯ୍ୟାରେ ଶୋଭା ପାଉଛନ୍ତି ।୪।
ଏମନ୍ତ ଶଯ୍ୟାପ୍ରାନ୍ତେ ଆସି । ବସିଲା ରାଧିକା ସୁକେଶୀ ।୫।
ଶଯ୍ୟାକୁ ପୁନଃ ପୁନଃ ଚାହିଁ । ସୁନ୍ଦରୀ ମନେ ସୁଖ ପାଇ ।୬।
ଏମନ୍ତ ରାଧିକାକୁ ଦେଖି । ଶ୍ରୀକୃଷ୍ଣ ବୋଲନ୍ତି ଗୋ ସଖି ।୭।

(ବିଭାସରାଗୈକତାଳୀତାଳାଭ୍ୟାଂ ଗୀୟତେ, ବରାଡ଼ୀରାଗେଣ ଗୀୟତେ)

ଗୀତ -

*କିଶଳୟଶୟନତଳେ କୁରୁ କାମିନି ଚରଣନଳିନବିନିବେଶମ୍*
*ତବ ପଦପଲ୍ଲବବୈରିପରାଭବମିଦମନୁଭବତୁ ସୁବେଶମ୍ ।*
*କ୍ଷଣମଧୁନା ନାରାୟଣମନୁଗତମନୁଭଜ ରାଧିକେ ॥ ଧ୍ରୁବମ୍-୧ ॥*

ଅର୍ଥ -

ବରାଡ଼ୀ ରାଗେଣ ଗୀୟତେ । ଦେଇଣି ଗାଥାର ଏ ଅର୍ଥେ ।୮।
ଭୋ ସଖି ରାଧିକେ ତୁ ଶୁଣ । ମୁଁ ଟି ଅଟଇ ନାରାୟଣ ।୯।

କ୍ଷଣେ ତୁ ସେବାକର ମୋତେ । ମୁଁ ଉପଗତ ହେଲି ତୋତେ ।୧୦।
ଏ ନବ କମଳ ଶଯ୍ୟାରେ । ତୋ ପାଦପଦ୍ମ ଦିଅ ବାରେ ।୧୧।
ତୋ ପାଦ କମଳଂ ବଇରି । ଏ ନବ କମଳ ସୁନ୍ଦରୀ ।୧୨।
ସେ ପରାଭବ ଏବେ ପାଉ । ତା ପରେ ନିବେଶ ତୋ ପାଉ ।୧୩।
ଏ ତୋର ପାଦପଦ୍ମ ସହି । ସ୍ୱଭାବେ ପଲ୍ଲବ ଅଟଇ ।୧୪।
କି ପଟାନ୍ତର ଦେବା ଆନ । ଜିଣିଲା ତରୁ ଦଳମାନ ।୧୫।

ଗୀତ -

*କରକମଳେନ କରୋମି ଚରଣମହମାଗମିତାସି ବିଦୂରମ୍ ।*
*କ୍ଷଣମୁପକୁରୁ ଶୟନୋପରି ମାମିବ ନୂପୁରମନୁଗତଶୂରମ୍ ॥୨॥*

ଅର୍ଥ -

ସେ ପାଦ କମଳ ସୁନ୍ଦରୀ । ମୁଁ କର କମଳରେ କରି ।୧୬।
କ୍ଷଣେ ଗୋ ସରଣ କରଇ । ନ ଯାଅ ତୁ ଗୋ ଆଡ଼ ହୋଇ ।୧୭।
ବହୁତ ଦୂର ପଥ ବହିଁ । ଚାଲି ତୁ ଆସିଛୁ ଯେ ସହି ।୧୮।
ଏଣୁ ତୋ ଚରଣ ଗୋ ସଖି । ବଥାଉଅଛି ଚନ୍ଦ୍ରମୁଖୀ ।୧୯।
କ୍ଷଣେ ଶଯ୍ୟାରେ ଶୁଅ ମୋର । ପାଦ ବଢ଼ାଇ ଦିଅ ତୋର ।୨୦।
ଯେବଣ ଚରଣ ଚାଲନ୍ତେ । ନୂପୁର ଶବଦ କରନ୍ତେ ।୨୧।
ସକଳ ସୁର ନରମୂନି । ଭୁବନମାନ ଯାଏ ଜିଣି ।୨୨।

ଗୀତ -

*ବଦନସୁଧାନିଧିଗଳିତମମୃତମିବ ରଚୟ ବଚନମନୁକୂଳମ୍ ।*
*ବିରହମିବାପନୟାମି ପୟୋଧରରୋଧକମୁରସି ଦୁକୂଳମ୍ ॥୩॥*

ଅର୍ଥ -

ଭୋ ସଖି ରାଧିକେ ମୋହର । ଚନ୍ଦ୍ରମା ପ୍ରାୟେ ମୁଖ ତୋର ।୨୩।
ବଚନ କହିବୁଁ ତୁ ଯେବେ । ଅମୃତ ବରଷିବ ତେବେ ।୨୪।

ଏଣୁ ତୁ ବିଳମ୍ବ ନକରି । ରଚୟ ବଚନ ତୁ ଗୋରୀ ।୨୫।
ପୟୋଧର ଯେ ସ୍ତନ ଦୁଇ । ତହୁଁ ତୁ ବସ୍ତ୍ର କାଢ଼ ସହି ।୨୬।

ଗୀତ -

*ପ୍ରିୟପରିରମ୍ଭଣରଭସବଳିତମିବ ପୁଲକିତମତିଦୁରବାପମ୍ ।*
*ମଦୁରସି କୁଚକଲଶଂ ବିନିବେଶୟ ଶୋଷୟ ମନସିଜତାପମ୍ ॥୪॥*

ଅର୍ଥ -

ସେ ସ୍ତନ ଆଣି ମୋର ପରେ । ହୃଦରେ ଲଦ ପ୍ରିୟେ ବାରେ ।୨୭।
ବିରହେ କରି ତନୁ ମୋର । ଦହି ହୋଉଛି ତନୁ ଆର ।୨୮।
ଏ ଘେନି ମୋର ପରେ ଆଣି । ତୋ କୁଚ ଦିଅ ଗୋ ମିଳେଣି ।୨୯।
ମନସିଜ ଯେ ନଙ୍ଗରାୟେ । ତା ତାପ ଶେଷ କରୁ ସହେ ।୩୦।
ପ୍ରିୟ ଯେ ଅଟଇ ମୁଁ ତୋର । ମୋ ଆଲିଙ୍ଗନ ଅର୍ଥେ ତୋର ।୩୧।
ଏ କୁଚକୁମ୍ଭ ବେନି ସହି । ବହୁତ ହର୍ଷ ଛନ୍ତି ହୋଇ ।୩୨।
କେମନ୍ତ କୁଚ ବେନି ତୋର । ବହୁତ ପୁଣ୍ୟ ଥାଇ ତାର ।୩୩।
ତେବେ ସେ ଭୋଗ କରିପାରି । ନୋହିଲେ ଥାନ ନାହିଁ ସରି ।୩୪।

ଗୀତ -

*ଅଧରସୁଧାରସମୁପନୟ ଭାମିନି ଜୀବୟ ମୃତମିବ ଦାସମ୍ ।*
*ତ୍ୱୟି ବିନିହିତମନସଂ ବିରହାନଳଦଗ୍ଧବପୁଷମବିଳାସମ୍ ॥୫॥*

ଅର୍ଥ -

ଭୋ ସଖି ରାଧିକେ ମୋହର । ଅଧରୁ ସୁଧା ପାନ ତୋର ।୩୫।
ଦେଇ ଜୀବନ ରଖ ସହି । ମୁଁ ତୋର ସେବକ ଅଟଇ ।୩୬।
ବିରହାନଳେ କରି ମୁହିଁ । ମୃତ ଜୀବନ ଅଛି ହୋଇଁ ।୩୭।
ଏଣୁ ତୋ ଅଧର ଅମୃତେ । ଜୀଆଅ ବାରେ ପ୍ରିୟ ମୋତେ ।୩୮।

ଗୀତ -

*ଶଶିମୁଖି ମୁଖରୟ ମଣିରସନାଗୁଣମନୁଗୁଣକଣ୍ଠନିନାଦମ୍ ।*
*ଶ୍ରୁତିପୁଟଯୁଗଳେ ପିକରୁତବିକଳେ ଶମୟ ଚିରାଦବସାଦମ୍ ॥୬॥*

ଅର୍ଥ -

ଭୋ ଶଶିମୁଖି ପ୍ରିୟେ ମୋର । ମଣି ମାଣିକ୍ୟେ ଶୋଭାକର ।୩୯।
ଏମନ୍ତ ରସନା ତୋ ସହି । ଶବଦ କରୁଁ ଗାତ୍ର ହୋଇଁ ।୪୦।
ବହୁତ କାଳର ଯେ ତାପ । ଆଜ ମୋ ଛାଡ଼ୁ କର୍ଣ୍ଣ ପାପ ।୪୧।
ପୁଣି ମୋ ଶ୍ରବଣ କେମନ୍ତ । କୋକିଳ ସ୍ୱନେ ବିକଳିତ ।୪୨।
ଏଣୁ ରସନା ଧ୍ୱନି କରି । ଶ୍ରବଣ ତାପ ଗୋ ସୁନ୍ଦରୀ ।୪୩।
ଛଡ଼ାଅ ମୋର ଚନ୍ଦ୍ରମୁଖୀ । ମୁଁ ତୋର ଦାସ ଅଟେ ସଖୀ ।୪୪।

ଗୀତ -

*ମାମପି ବିଫଳରୁଷା ବିକଳୀକୃତମବଲୋକିତମଧୁନେଦମ୍ ।*
*ମୀଳତି ଲଜ୍ଜିତମିବ ନୟନଂ ତବ ବିରମ ବିସୃଜ ରତିଖେଦମ୍ ॥୭॥*

ଅର୍ଥ -

ଭୋ ରାଧେ କହଇ ମୁଁ ତୋରେ । ତୁ ଯେଣୁ ନ ଚାହିଁଲୁ ମୋରେ ।୪୫।
ବିକଳ ହୋଉଛି ମୋ ଚିତ୍ତେ । ଏଣୁ ତୁ ଚାହଁ ପ୍ରିୟେ ମୋତେ ।୪୬।
କେବେ ତୁ ନ ଚାହିଁବୁ ସଖୀ । ବିଫଳ ଜୀବନ ମୋ ଲେଖି ।୪୭।
ଏ ତବ ନୟନ ଗୋ ବେନି । ବୁଜି ହୋଉଛି ଲଜ୍ଜା ଘେନି ।୪୮।
ମୋ ସୁଖ ଦେଖିବାକୁ ବାଳୀ । ଏଣୁ ତୁ ଚାହୁଁକିନା ଭାଳି ।୪୯।
କେଳେଶ ହୋଉଅଛି ମୋର । ବିଫଳ କୋପେ ପ୍ରିୟେ ତୋର ।୫୦।
ଚିର କାଳର ରତିଖେଦ । ଭୋ ରାଧେ କର ଆଜ ଭେଦ ।୫୧।
ରୋଷ ନ କରି ରାଧେ ମୋତେ । ସରାଗ କରି ପ୍ରିୟେ ଚିତ୍ତେ ।୫୨।
ମୋର ବଦନ ବାରେ ପେଖ । ଯେମନ୍ତେ ଜାତ ହୋଏ ସୁଖ ।୫୩।
ଯହୁଁ ଏମନ୍ତ କୃଷ୍ଣ କହେ । ଶୁଣି ରାଧିକା ହର୍ଷ ହୋଏ ।୫୪।
ବଲ୍ଲଭ ମୁଖକୁ ଚାହିଁଲା । ଅଳପ ହୋଇଣ ହସିଲା ।୫୫।

ଭଣିତା -

*ଶ୍ରୀଜୟଦେବଭଣିତମିଦମନୁପଦନିଗଦିତମଧୁରିପୁମୋଦମ୍ ।*
*ଜନୟତୁ ରସିକଜନେଷୁ ମନୋହରରତିରସଭାବବିନୋଦମ୍ ॥୮॥*

